# ଅଭିଶପ୍ତ ଅଭିମନ୍ୟୁ

ଲେଖକ :
ଡ. ଗୋପଳକୃଷ୍ଣ ଶ୍ରୀଚନ୍ଦନ

ପ୍ରକାଶିକା :
ଶ୍ରୀମତୀ ବନଜବାସିନୀ ଶ୍ରୀଚନ୍ଦନ
ଏନ୍-୩/୨୮୭,
ମୌଜା : ଜୟଦେବ ବିହାର,
ଭୁବନେଶ୍ୱର - ୭୫୧୦୧୫
ଦୂରଭାଷ : ୦୬୭୪-୨୫୫୮୪୬୬
ଶୂନ୍ୟଭାଷ : ୯୭୭୭୧୬୧୮୭୮

ପ୍ରଥମ ପ୍ରକାଶ :
ମହା ବିଷୁବ ସଂକ୍ରାନ୍ତି, ୨୦୧୦



ଅକ୍ଷର ସଜ୍ଜା :
ଶ୍ରୀ କୁମର ଶ୍ରୀଚନ୍ଦନ
ଶୂନ୍ୟଭାଷ - ୯୬୫୮୨୨୩୬୮୭

ମୁଦ୍ରଣ :
ମା' ମଙ୍ଗଳା ପ୍ରେସ୍
ପ୍ଲଟ ନଂ. ୧୭୧,
ୟୁନିଟ୍-୯ (ଫ୍ଲାଟ), ଭୁବନେଶ୍ୱର

ମୂଲ୍ୟ : ଟ. ୩୫.୦୦ (ପଞ୍ଚତ୍ରିଶ ଟଙ୍କା ମାତ୍ର)

**ABHISHAPTA ABHIMANYU**

*Writer :*
**Dr. Gopalkrishna Srichandan**

*Publisher :*
Smt. Banajabasini Srichandan
N-3/287,
Jayadev Vihar,
Bhubaneswar-751015
Tel. No. : 0674-2558466
Mobile : 9777161878

*First Edition :*
**Maha Vishuba Samkrati - 2010**



*D.T.P.*
**Sri Kumar Srichandan**
Mobile : 9658223687

*Printed at :*
**Maa Mangala Press**
Plot No. 171, Unit-9 (Flat), Bhubaneswar

Price : Rs. 35.00 (Thirty five only)

# ଉତ୍ସର୍ଗ



ସାମ୍ପ୍ରତିକ ସମାଜ ଓ ଶାସନ କଳର ଯଥେଚ୍ଛାଚାରିତା, ବିଚାରହୀନ ଅବିବେକୀ ନିଷ୍ଠୁରତାର ଲୌହ ଚକ୍ରତଳେ ପେଷି ହୋଇଗଲୁ ସିନା, ଆଦୌ ଅପିଲୁ ନାହିଁ; ସେଇ ଆମର ଅଲିଅଳ ସବା ସାନ ପୁଅ ମୁନାର ଅଶ୍ରୁଳ ସ୍ମୃତିରେ......

## ଲେଖକୀୟ ........

ପ୍ରତ୍ୟେକ ସାହିତ୍ୟିକ ସର୍ଜନା ପଛରେ ନିଶ୍ଚୟ କିଛି ବାସ୍ତବ ଘଟଣା ନିହିତ; ଯାହା ସହିତ କାଳ୍ପନିକତାକୁ ଆରୋପ କରି କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ ଆଦିର ସୃଷ୍ଟି । ଏହି କ୍ଷୁଦ୍ର ଉପନ୍ୟାସ ଧର୍ମୀ ଲେଖାଟି ଏହି ଶ୍ରେଣୀର । ଏଥିରେ କୌଣସି ବ୍ୟକ୍ତି ବିଶେଷ, ପଦବୀ କିମ୍ଵା ସରକାରୀ ସଂସ୍ଥା ପ୍ରତି ତର୍ଜନୀ ନିକ୍ଷେପ କରିବାର ଉଦ୍ଦେଶ୍ୟ ନାହିଁ । ସାହିତ୍ୟ ସୃଷ୍ଟିର ଅନ୍ୟତମ ଉଦ୍ଦେଶ୍ୟ ହେଉଛି ଆବିଳତା ବିଜଡ଼ିତ ଓ ଦୁଷ୍କୃତିଗ୍ରସ୍ତ ସମାଜ ତଥା ଶାସନକଳକୁ ସଜାଡ଼ିବା ପାଇଁ ପରୋକ୍ଷରେ ଆଭାସ ଦେବା ।

ଯଦି ଆମର ସାମ୍ପ୍ରତିକ ସମାଜ ଓ ସରକାରୀ କଳ ଏ କ୍ଷୁଦ୍ର ରଚନାର ଅନ୍ତର୍ନିହିତ ଭାବଧାରାରେ ଅନୁପ୍ରାଣିତ ହୋଇ ସେମାନଙ୍କ କାର୍ଯ୍ୟ ପ୍ରଣାଳୀରେ ସମ୍ୟକ ପରିବର୍ତ୍ତନ ଆଣି ସମାଜର ସାମଗ୍ରିକ ହୀତ ସାଧନରେ ବ୍ରତୀ ହୁଅନ୍ତି; ତେବେ ଲେଖାର ଅନ୍ତରାତ୍ମାରେ ଯେଉଁ 'ଅଭିଶପ୍ତ ଅଭିମନ୍ୟୁ'ଟିର ଦଧୀଚି ସଦୃଶ ଆତ୍ମବଳିଦାନ ତୀର୍ଯକ ଭାବେ ଆତଯାତ ସଦା ଚଳଚଞ୍ଚଳ ଓ ଜାଜ୍ଜ୍ୱଲ୍ୟମାନ; ସେଇ ବିକଚ ଅକସ୍ମାତ ଛିନ୍ନ ଜୀବନର ଯନ୍ତ୍ରଣା ଦାୟକ ଅଚାନକ ଅବସାନ ନିଶ୍ଚିତଭାବେ କାଳର କଷଟିରେ ଚୀରଭାସ୍ୱର ଓ ଉଦ୍‌ଭାବସିତ ହୋଇ ଦିନେନା ଦିନେ ସାଫଲ୍ୟ ମଣ୍ଡିତ ହେବ - ଏ ଅଭୀପ୍‌ସା ବାସ୍ତବବାଦୀ ସ୍ୱପ୍ନ ଲେଖକର ପୂରାପୂରି ନିଜସ୍ୱ ।

ମୂଦ୍ରଣ ପୂର୍ବ ପାଣ୍ଡୁଲିପି ପାଠକରି ମୋର ଅନୁଜପ୍ରତିମ ସୁଖ୍ୟାତ ନାଟ୍ୟକାର ତଥା ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାକ୍ତନ ସଚୀବ ଶ୍ରୀ ରବୀନ୍ଦ୍ରନାଥ ଦାସ ଓ ଓଡ଼ିଶା ଲେଖିକା ସଂସଦ ସମ୍ପାଦିକା ଓ ସୁସାହିତ୍ୟିକା ଅନୁଜାପ୍ରତିମ ଡ. ଶକୁନ୍ତଳା ବଳିୟାରସିଂହ ଲେଖାଟିକୁ ମୁଦ୍ରିତ ଆକାରରେ ପ୍ରକାଶିତ କରିବାକୁ ଅନୁକୂଳ ମତପୋଷଣ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଅନୁଗୃହୀତ ।

ମୁଁ ଲେଖାଟିର ଜନକ ହେଲେ ମୋର ସହଧର୍ମିଣୀ ପ୍ରକାଶିକା ଶ୍ରୀମତୀ ବନଜବାସିନୀ ଶ୍ରୀଚନ୍ଦନ ଏହାର ଗର୍ଭଧାରିଣୀ ମାତା ।

ପରିଶେଷରେ ଲେଖାଟିକୁ ଡି.ଟି.ପି. କରି ମୁଦ୍ରଣ ଅବସ୍ଥାକୁ ଆଣିଥିବା ଶ୍ରୀମାନ୍ କୁମର ଶ୍ରୀଚନ୍ଦନ ଏବଂ ମୁଦ୍ରଣ କରିଥିବା ମା' ମଙ୍ଗଳା ପ୍ରେସ୍‌ର ସତ୍ତ୍ୱାଧିକାରୀଙ୍କୁ ମୋର ବହୁତ ବହୁତ ଧନ୍ୟବାଦ ।

**ଗୋପାଳକୃଷ୍ଣ ଶ୍ରୀଚନ୍ଦନ**

# ଅଭିଶପ୍ତ ଅଭିମନ୍ୟୁ

ପ୍ରସେନ୍‌ଜିତ୍ ଖୁବ୍ ଭଲ ଛାତ୍ର ଥିଲେ । କ୍ରିକେଟ୍ ବି ଭଲ ଖେଳୁଥିଲେ । ପରୀକ୍ଷାରେ ଭଲ ମାର୍କ ଆଣିବା ପାଇଁ ସେ ହରିଶଙ୍କର ଦର୍ଶନରେ ଯାଇ ନଥିଲେ । ସମସ୍ତେ ଅନ୍ତେବାସୀ କଲେଜ ବସ୍‌ରେ ଗଲେ । ପ୍ରସେନ୍‌ଜିଦ୍ ଏକା ରହିଲେ ହଷ୍ଟେଲ୍‌ରେ ଯେ ହେତୁ ତା' ଆର ଦିନ ଥିଲା ଆଗ୍ରୋନମିର ଫାଇନାଲ୍ ପରୀକ୍ଷା । ପରୀକ୍ଷାରେ ଭଲ କରିବା ପାଇଁ କ୍ରିକେଟ ଖେଳ ବି ଛାଡ଼ିଦେଲେ । ସବୁବେଳେ ରୁମ୍ ମଧ୍ୟରେ ରହି ପଢୁଥିବେ । କଥାବାର୍ତ୍ତାରେ ମିତ ବ୍ୟୟୀ ମାତ୍ର କ୍ୱିଜ୍ ଟେଷ୍ଟ୍‌ରେ ସେ ପ୍ରାୟ ଥରେ ଦୁଇଥରକୁ ଛାଡ଼ି ଟପର୍ ହୁଅନ୍ତି । ସାଙ୍ଗ ପିଲାମାନେ କହନ୍ତି - ''ପ୍ରସେନ୍‌ଜିତ୍‌ଟା ଗୋଟାଏ ପାଗଳା । କୋଣରେ ବସି ପଢୁଥିବ । ସେ ଘୋଷବନ୍ତ ନୁହେଁ । ବରଂ ତା'ର ଫଟୋଗ୍ରାଫିକ୍ ମେମୋରି । କୋର୍ସ ବହି ଅପେକ୍ଷା ପଢୁଥିବ ବିବେକାନନ୍ଦ, ଶିବାନନ୍ଦ, ଅନୁକୂଳଚନ୍ଦ୍ର କିମ୍ବା ରଜନୀଶଙ୍କୁ'' । ଜୀବନ ସମ୍ପର୍କରେ ଏହି ମହାତ୍ମାମାନେ କ'ଣ କହନ୍ତି, ତାହା ଜାଣିବା ପାଇଁ ପ୍ରସେନ୍‌ଜିତ୍‌ଙ୍କ ଜିଜ୍ଞାଷା ଓ ଆଗ୍ରହ ଥିଲା ଅହେତୁକ ଭାବେ ପ୍ରବଳ ।

ଡିଷ୍ଟିଙ୍କ୍‌ସନ୍ ସହିତ ଆଗ୍ରୋନମିରେ ପ୍ରଥମ ଶ୍ରେଣୀ ଅନର୍ସ ରଖି ପ୍ରସେନ୍‌ଜିତ୍ ବି.ଏସସି (ଏଜି) ଉତ୍ତୀର୍ଣ୍ଣ ହେଲେ । ଏମ୍‌ଏସ୍‌ସି (ଏଜି)ରେ ବି ଆଡ୍‌ମିସନ ନେଲେ । କଳିଙ୍ଗବୀର ଦ୍ୱିତୀୟ ଖାରବେଳ ବୋଲି ନିଜକୁ କହୁଥିବା ବିଜୁ ପଟ୍ଟନାୟକ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେଲାପରେ ୧୯୮୪ରେ ଅଢ଼େଇ ଶହ ଜଣ କୃଷି ଗ୍ରାଜୁଏଟ୍ ଓ ପୋଷ୍ଟ ଗ୍ରାଜୁଏଟ୍‌ଙ୍କୁ ଷ୍ଟାଇପେଣ୍ଡାରି ଗ୍ରାଜୁଏଟ୍ ଭାବେ ନିଯୁକ୍ତି ଦେଲେ । ପ୍ରସେନ୍‌ଜିତ୍ ୬ଷ୍ଠ ବର୍ଷକୁ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ଏହି ନିଯୁକ୍ତି ପାଇଁ ଦରଖାସ୍ତ କଲେ । ଏହି ପଦବୀ ପାଇଁ କୌଣସି ଇଣ୍ଟରଭ୍ୟୁ ହେଲା ନାହିଁ । ବିଶ୍ୱ ବିଦ୍ୟାଳୟ ପରୀକ୍ଷାରେ ଯେଉଁ ମାର୍କ ମିଳିଥିଲା, ତାକୁ ଭିତ୍ତି କରି ମେରିଟ୍ ଲିଷ୍ଟ୍ ମୃତ୍ତିକା ସଂରକ୍ଷଣ ବିଭାଗ ପ୍ରସ୍ତୁତ କଲେ । ବିଏସ୍‌ସି (ଏଜି) ପରୀକ୍ଷାରେ ଉଚ୍ଚ ମାର୍କ ରଖିଥିବାରୁ ପ୍ରସେନ୍ ଜିତ୍ ମେରିଟ୍ ଲିଷ୍ଟର ପ୍ରଥମ ପନ୍ଦର ଜଣଙ୍କ ମଧ୍ୟରେ ରହିଲେ । ଓଡ଼ିଶାରେ ଯାହା ଚାକିରି ସମସ୍ୟା, ସେଥିରେ ଆଉ ଏମ୍‌ଏସ୍‌ସି (ଏଜି) ନ ପଢ଼ି ପ୍ରସେନ୍‌ଜିତ୍ ଷ୍ଟାଇପେଣ୍ଡାରି ଗ୍ରାଜୁଏଟ୍

ପଦବୀରେ ଯୋଗ ଦେଲେ । କୋଡ଼ିଏ ମାସ ଏହି ପଦବୀରେ ରହିଲା ପରେ ମୃତ୍ତିକା ସଂରକ୍ଷଣ ନିର୍ଦ୍ଦେଶାଳୟ ସମସ୍ତ ଅଢ଼େଇଶହ ଷ୍ଟାଇପେଣ୍ଡାରି ଗ୍ରାଜୁଏଟ୍‌ଙ୍କୁ ରେଗୁଲାର୍ କରି କନିଷ୍ଠ ମୃତ୍ତିକା ସଂରକ୍ଷଣ ଅଧିକାରୀ ଭାବେ ନିଯୁକ୍ତି ଦେଲେ । ପ୍ରସେନ୍‌ଜିତ୍ ମାଲ୍ୟବନ୍ତ ଉପଖଣ୍ଡରେ ଅବସ୍ଥାପିତ ହେଲେ ।

ସରକାରୀ ଚାକିରି ଯେ କ୍ରୁଶ ବିଦ୍ଧ ହେବା ପୂର୍ବରୁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ଦୁର୍ବୃତ୍ତମାନେ ପିନ୍ଧାଇ ଦେଇଥିବା କଣ୍ଟାର ମୁକୁଟ ସଦୃଶ – ଏ ଧାରଣା କି ଅନୁଭୂତି ପ୍ରସେନ୍‌ଜିତଙ୍କର ନଥିଲା । କ୍ରମେ କ୍ରମେ ନିଆଁର ଧାସ ପ୍ରସେନ୍‌ଜିତ୍‌ଙ୍କ ଦେହ, ମନ, ପ୍ରାଣ ଓ ଆତ୍ମାରେ ବାଜିଲା । ଯେ ହେତୁ ସେ ଅହେତୁକ ଭାବେ ନୀରବ ସହଜରେ ମିଳିମିଶି ପାରନ୍ତି ନାହିଁ କି ଭଲ କଥା କୁହା କପିଳା' କିପରି ହେବାକୁ ହୁଏ ଜାଣନ୍ତି ନାହିଁ; ସେ ଉପରିସ୍ଥ ହାକିମଙ୍କ ଦୃଷ୍ଟିରେ ଅସ୍ପଷ୍ଟ ଓ ଅଜ୍ଞେୟ ହୋଇ ଉଭା ହେଲେ ।

ପ୍ରସେନ୍‌ଜିତ୍ କ୍ରମେ ଅନୁଭବ କଲେ- ଯାହା କୁହାଯାଏ, ତାହା କରାଯାଏ ନାହିଁ । 'କାମ' ଅପେକ୍ଷା 'ଦାମ୍' ପ୍ରତି ଅଧିକ ସଚେତନ ସମସ୍ତେ ଏଠି । କାଗଜପତ୍ରରେ କାମ କରିବା ଦେଖାଇ ଦିଅ । କିଛି ଯାଏ ଆସେ ନାହିଁ । ସବୁ ଚଳିଯିବ ଯଦି ଉପରିସ୍ଥ ଅଧିକାରୀଙ୍କ 'ମାସିକ ଦାମ୍' କଥା ବୁଝୁଥିବ । କଥାରେ ଅଛି – ପେଟ ପୋଷ, ନାହିଁ ଦୋଷ । ନେଇ ଆଣି ଥୋଇ ପାରିଲେ, ଚୋରି ବିଦ୍ୟା ଭଲ । ପ୍ରସେନ୍‌ଜିତ୍ କିନ୍ତୁ ଏ କଥାକୁ ଆଚରଣ କରିବା ଦୂରେ ଥାଉ, ମାନସିକ ସ୍ତରରେ ଗ୍ରହଣ କରି ନେବାରେ ଅସମର୍ଥ ହେଲେ ।

ଏହିପରି ନୂଆ ନୂଆ ଚାକିରିରେ ପଶିଥିବା ଅବର ଅଧିକାରୀମାନଙ୍କୁ ଗୁଳାରେ ପକାଇବା ପାଇଁ ଉପରିସ୍ଥ ହାକିମଙ୍କ ହାତରେ କେତୋଟି ଅମୋଘ ଅସ୍ତ୍ର ଥାଏ । ଗୋଟିଏ ହେଲା, ଡେପୁଟେସନରେ କୌଣସି ନିଗମକୁ ପଠାଇଦେବା; ନଚେତ୍ କେ.ବି.କେ. ଜିଲ୍ଲାରେ କାମ କରିବା ପାଇଁ ନାମ ସୁପାରିଶ କରିଦେବା । ଉପର ଅଧିକାରୀ ଦେଢ଼ ବର୍ଷ ପ୍ରସେନ୍‌ଜିତ୍‌ଙ୍କୁ ନିଜ ବାଟରେ ପକାଇବାକୁ ଉଦ୍ୟମ କଲେ । ମାତ୍ର ଶ୍ୱାନ ପୁଚ୍ଛ ପରି ପ୍ରସେନ୍‌ଜିତ୍ ଅପରିବର୍ତ୍ତିତ । ଦିନେ ପ୍ରସେନ୍‌ଜିତ୍ ଆଦେଶ ପାଇଲେ, ତାଙ୍କ ବଦଳି ହୋଇଛି ଓଡ଼ିଶା ରାଜ୍ୟ ଆମ୍ବ ଉନ୍ନୟନ ନିଗମକୁ । ଜାଣିଲେ, ଅନ୍ୟ ସାଙ୍ଗ ସାଥିମାନେ ଉପର ମହଲରେ ହାତ ଚିକ୍କଣ ବ୍ୟବସ୍ଥା କରି ଏପରି ଡେପୁଟେସନ ପୋଷ୍ଟିଂରୁ ଖସିଗଲେ । ମାତ୍ର ପ୍ରସେନ୍‌ଜିତ୍ ଏ ସମ୍ପର୍କରେ ଖବର ବି ରଖି ପାରିଲେ ନାହିଁ । ଜାଣିଲା ବେଳକୁ ଲେଡ଼ିଗୁଡ଼ କହୁଣିକୁ ବୋହିଗଲାଣି ।

ବାପାଙ୍କୁ ଖବର ଦେଲେ । ପ୍ରସେନଜିତ୍‌ଙ୍କ ବାପା ଥିଲେ ଜଣେ ଉଚ୍ଚପଦସ୍ଥ ପ୍ରଶାସନିକ ଅଧିକାରୀ । ଚାରି ବର୍ଷ ହେଲା ଅବସର ନେଇଛନ୍ତି । ନିଗମ କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରି ଭୁବନେଶ୍ୱରରେ ରଖିଦେବାକୁ ବ୍ୟବସ୍ଥା କରିଦେଲେ । ନଚେତ୍ ସୁନ୍ଦରଗଡ଼ କି କୋରାପୁଟରେ ଅବସ୍ଥାପିତ ହେବାର ସମ୍ଭାବନା ଯଥେଷ୍ଟ ଥିଲା । ଯେହେତୁ ଭୁବନେଶ୍ୱରରେ ଘର ପାଖରେ ରହିଲେ, କାମ ଅପେକ୍ଷା ଦାମ୍ ପ୍ରତି ଅଧିକ ଦୃଷ୍ଟି ଦେବେ ବୋଲି କର୍ତ୍ତୃପକ୍ଷ ପ୍ରସେନ୍‌ଜିତ୍‌ଙ୍କଠାରୁ ଆଶା କରିଥିଲେ । ମାତ୍ର ପ୍ରସେନ୍‌ଜିତ୍ ଯେତିକି ପାରିଲେ କାମ କଲେ ସିନା, ଦାମ୍ ବ୍ୟବସ୍ଥା କରି ପାରିଲେ ନାହିଁ । ନିଗମ ଚେୟାର୍‌ମ୍ୟାନଙ୍କ ଘରେ ଦୁଇଜଣ ଏନ୍.ଏମ୍.ଆର୍. କର୍ମଚାରୀ ଖଟୁଛନ୍ତି । ତାଙ୍କ ପାଇଁ ମିଛ ଭାଉଚର କରି ତାଙ୍କ ପ୍ରାପ୍ୟ ଚେୟାର୍‌ମେନ୍‌ଙ୍କ ଘରେ ପ୍ରସେନ୍‌ଜିତ୍‌ଙ୍କ ପୂର୍ବବର୍ତ୍ତୀ ଅଧିକାରୀ ଦେଇ ଆସୁଥିଲେ । ପ୍ରସେନ୍‌ଜିତ୍ ଏ କାମ କରିବାକୁ ପଛେଇଲେ । କହିଲେ - ସେମାନେ ଆସି ମୋ ପାଖରୁ ତାଙ୍କର ମାସିକ ଭାଡିଆ ନେଇଯାଆନ୍ତୁ । ମୁଁ କାହିଁକି ତାଙ୍କ ପ୍ରାପ୍ୟ ଦେବାକୁ ଚେୟାରମେନ୍‌ଙ୍କ ନିବାସକୁ ଯିବି ? ଏମିତି ୩/୪ ମାସ ଚାଲିଲା । ବର୍ଷେ ପାଇଁ ଡେପୁଟେସନରେ ପ୍ରସେନ୍‌ଜିତ୍ ନିଗମ ଅଧୀନରେ ଅବସ୍ଥାପିତ ହୋଇଥିଲେ । ୯ ମାସ ଯାଇଛି କି ନାହିଁ, ନିଗମ ପରିଚାଳନା ନିର୍ଦ୍ଦେଶକ ଏକ ଆଦେଶ ଦେଲେ ଯେ ପ୍ରସେନ୍‌ଜିତ୍ ନିଗମର ଜୁନିୟର ଇଞ୍ଜିନିୟରଙ୍କୁ ଦାୟିତ୍ୱ ଦେଇ ରିଲିଭ୍ ହୋଇ ଯାଆନ୍ତୁ ଏବଂ ଭବିଷ୍ୟତ ଅବସ୍ଥାପନ ପାଇଁ ନିର୍ଦ୍ଦେଶାଳୟରେ ଯୋଗ ଦିଅନ୍ତୁ । ଏପରି ଆଦେଶ ପାଇ ପ୍ରସେନ୍‌ଜିତ୍ ହତବାକ୍ ହୋଇଗଲେ । କ'ଣ କରିବେ ବୋଲି ଚିନ୍ତା କରିବା ପୂର୍ବରୁ ଜୁନିଅର୍ ଇଞ୍ଜିନିୟର୍ ଚାର୍ଜ ରିପୋର୍ଟ ପ୍ରସ୍ତୁତ କରି ଦାୟିତ୍ୱ ରିଜ୍ୟୁମ୍ କରି ନେଲେ । ଏକତରଫା ରିଲିଭ୍ ହୋଇ ପ୍ରସେନ୍‌ଜିତ୍ ନିର୍ଦ୍ଦେଶାଳୟରେ ଯୋଗଦାନ ରିପୋର୍ଟ ସମର୍ପଣ କଲେ । ଡେପୁଟି ଡାଇରେକ୍ଟର, ଡାଇରେକ୍ଟର ପ୍ରଭୃତି ଉପରିସ୍ଥ ହାକିମମାନଙ୍କୁ ଭେଟି ତାଙ୍କ ପ୍ରତି ଅନ୍ୟାୟ ହୋଇଛି ବୋଲି ଗୁହାରି କଲେ । ସେମାନେ କହିଲେ - ତୁମର କିଛି ଭୁଲ୍ ଥିବ ବୋଲି ନିଗମ କର୍ତ୍ତୃପକ୍ଷ ଏପରି ପଦକ୍ଷେପ ନେଲେ । ପ୍ରସେନଜିତ୍ ବିନମ୍ର ଭାବେ କହିଲେ - ମୋର ଯଦି ତ୍ରୁଟି ବିଚ୍ୟୁତି ଅଛି, ସେଥିପାଇଁ କୈଫତ୍ ମଗାଯାଇ ପାରିଥାଆନ୍ତା । ମୋତେ ଉତ୍ତର ଦେବାର ସୁଯୋଗ ଦେବା 'ସ୍ୱାଭାବିକ ନ୍ୟାୟ ପ୍ରଦାନ' ଦୃଷ୍ଟିରୁ ଆବଶ୍ୟକ । ଡାଇରେକ୍ଟର୍‌ଙ୍କୁ ଲେଖି ମୋତେ ବଦଳି କରାଇବା ପର୍ଯ୍ୟନ୍ତ ନିଗମ କର୍ତ୍ତୃପକ୍ଷ ଅପେକ୍ଷା କରିବା ଉଚିତ ଥିଲା । ନିଗମ କର୍ତ୍ତୃପକ୍ଷ ମୋତେ ଏପରି ଏକ ତରଫା ରିଲିଭ୍ କରିବା ଦ୍ୱାରା ବିଭାଗୀୟ ନିର୍ଦ୍ଦେଶକଙ୍କ କର୍ତ୍ତୃତ୍ୱ ପ୍ରତି ମଧ୍ୟ ଏହା ଏକ ଆହ୍ୱାନ ।

ପ୍ରସେନ୍‌ଜିତ୍‌ଙ୍କ ପ୍ରତି ହୋଇଥିବା ଅନ୍ୟାୟ ବ୍ୟବହାର ନିରାକରଣ ନିମନ୍ତେ କେହି ସହାନୁଭୂତି ପ୍ରଦର୍ଶନ କଲେ ନାହିଁ । ବରଂ କହିଲେ, ଚାର୍ଯ ନଦେଇ ଅର୍ଥାତ୍ ରିଲିଭ୍ ଅର୍ଡର ଗ୍ରହଣ ନକରି ରାଜ୍ୟ ପ୍ରଶାସନିକ ଟ୍ରିବ୍ୟୁନାଲ୍‌କୁ ଯାଇଥିଲେ ଏପରି ଏକତରଫା ଅନ୍ୟାୟ ଆଦେଶ ବିରୁଦ୍ଧରେ ଷ୍ଟେ ମିଳିଥାନ୍ତା ଏବଂ ପ୍ରସେନ୍‌ଜିତ ଓଡ଼ିଶା ରାଜ୍ୟ ଆମ୍ବ ଉନ୍ନୟନ ନିଗମ ଲିଃରେ ପୂର୍ବବତ୍ ତାଙ୍କ ପଦବୀରେ ରହି ପାରିଥାନ୍ତେ । ସରଳ, ନିଷ୍କପଟ ଓ ସଚ୍ଚୋଟ୍ ପ୍ରସେନ୍‌ଜିତ୍‌ଙ୍କ ମୁଣ୍ଡକୁ ଏକଥା ସେତେବେଳେ ଢୁକିଲା ନାହିଁ । ସେ ଦାୟିତ୍ୱ ହସ୍ତାନ୍ତର ରିପୋର୍ଟରେ ସ୍ୱାକ୍ଷର କରି ଦେଲେ । ଏଣେ ନିର୍ଦ୍ଦେଶାଳୟ କର୍ତ୍ତୃପକ୍ଷ ସାଙ୍ଗେ ସାଙ୍ଗେ ଅନ୍ୟତ୍ର ବଦଳି ସହ ଅବସ୍ଥାପନ ବ୍ୟବସ୍ଥା ନ କରି ତାଙ୍କୁ କିଛି ଦିନ ଅପେକ୍ଷା କରିବାକୁ କେବଳ ମୌଖିକ ନିର୍ଦ୍ଦେଶ ଦେଲେ ।

ପ୍ରସେନ୍‌ଜିତ୍ ପ୍ରତିଦିନ ନିର୍ଦ୍ଦେଶାଳୟକୁ ଯାଆନ୍ତି । ଡେପୁଟି ଡାଇରେକ୍ଟର୍ ଡକ୍ଟର୍ ମିଶ୍ରଙ୍କୁ ସାକ୍ଷାତ କରି ନିଜର ଉପସ୍ଥାନ ଦିଅନ୍ତି । ନିର୍ଦ୍ଦେଶାଳୟରୁ ଜାଣିବାକୁ ପାଇଲେ, ରାଜ୍ୟ ଆମ୍ବ ଉନ୍ନୟନ ନିଗମର ଚେୟାରମେନ୍‌ଙ୍କ ଜଣେ ଆତ୍ମୀୟଙ୍କୁ କୋରାପୁଟରୁ ବଦଳି କରି ନିଗମକୁ ଆଣିବା ପାଇଁ ତାଙ୍କ ବିରୁଦ୍ଧରେ ଭିତ୍ତିହୀନ ଅଭିଯୋଗ ରିପୋର୍ଟ ପଠାଇଯାଇଛି ଏବଂ ନିର୍ଦ୍ଦେଶାଳୟ ତାହା ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାରେ ବିଳମ୍ବ କରିବାରୁ ତାଙ୍କୁ ଏପରି ଏକ ତରଫା ଜବରଦସ୍ତି ରିଲିଭ କରି ନିର୍ଦ୍ଦେଶାଳୟରେ ଯୋଗଦେବା ପାଇଁ ଆମ୍ବ ଉନ୍ନୟନ ନିଗମର ଏମ.ଡି. ଚେୟାରମେନ୍‌ଙ୍କ ପ୍ରରୋଚନାରେ ନିର୍ଦ୍ଦେଶ ଦେଇଥିଲେ । ତାଙ୍କ ଯାଗାରେ କୋରାପୁଟରୁ ବଦଳିହୋଇ ଆସୁଥିବା ଚିନ୍ମୟ ସାହୁ ଚିପିଲିମା କୃଷି ମହାବିଦ୍ୟାଳୟରେ ତାଙ୍କର ଚାରି ବର୍ଷ ସହପାଠୀ ଥିଲେ ।

ପ୍ରସେନ୍‌ଜିତ୍ ଡାଇରେକ୍ଟର୍‌ଙ୍କୁ ଭେଟି ନିବେଦନ କଲେ, ତାଙ୍କର ଏକ ବର୍ଷର ଡେପୁଟେସନ ପିରିୟଡ଼ ସରିବା ପୂର୍ବରୁ ମାତ୍ର ନଅ ମାସ ଅତିବାହିତ ହୋଇଛି କି ନାହିଁ, ତାଙ୍କୁ ନିଗମ କର୍ତ୍ତୃପକ୍ଷ ଅନ୍ୟାୟ ଭାବେ ରିଲିଭ କରି ଦେଇଥିବାରୁ ତାଙ୍କୁ ଭୁବନେଶ୍ୱର ପାଖାପାଖି କୌଣସି ସ୍ଥାନରେ ଅବସ୍ଥାପିତ କରାଯାଉ । ଲିଖିତ ଭାବେ ମଧ୍ୟ ଆବେଦନ କଲେ ଏବଂ ଆମ୍ବ ଉନ୍ନୟନ ନିଗମରେ ସେ ତାଙ୍କ କର୍ତ୍ତବ୍ୟରେ କୌଣସି ତ୍ରୁଟି କରି ନାହାନ୍ତି ବୋଲି ଆବେଦନ ପତ୍ରରେ ଦର୍ଶାଇଲେ । ତାଙ୍କ ବାପାଙ୍କର ଜଣେ ବନ୍ଧୁ ଏବଂ ପୂର୍ବତନ ବିଧାୟକ ତଥା ଆମ୍ବ ଉନ୍ନୟନ ନିଗମର ଭୂତପୂର୍ବ ଚେୟାରମେନ୍ ଶ୍ରୀଯୁକ୍ତ ନାୟକଙ୍କ ସାଙ୍ଗରେ ଯାଇ ନିର୍ଦ୍ଦେଶକଙ୍କୁ ସାକ୍ଷାତ କଲେ । ଶ୍ରୀଯୁକ୍ତ ନାୟକ ୧୯୭୧ ମସିହାରେ ଏମ୍‌ଏଲ୍‌ଏ ଥାଇ ରାଜ୍ୟ ଆମ୍ବ ଉନ୍ନୟନ ନିଗମର ଚେୟାରମ୍ୟାନ୍ ଥିଲେ । ସେତେବେଳେ ନିର୍ଦ୍ଦେଶକ ମହୋଦୟ

ଜଣେ ଜିଲ୍ଲା ସ୍ତରୀୟ ଅଧିକାରୀ ଥିଲେ । ସେ ସାକ୍ଷାତ ସମୟରେ ନିର୍ଦ୍ଦେଶକ ପ୍ରସେନ୍‌ଜିତ୍‌ଙ୍କୁ ଭୁବନେଶ୍ୱର ପାଖାପାଖି ପୋଷ୍ଟିଂ ଦେବାକୁ ଶ୍ରୀଯୁକ୍ତ ନାୟକଙ୍କୁ ପ୍ରତିଶ୍ରୁତି ଦେଇଥିବା ନିଜେ ପ୍ରସେନ୍‌ଜିତ୍ ସ୍ୱକର୍ଣ୍ଣରେ ଶୁଣି ବଡ଼ ଉଲ୍ଲସିତ ହୋଇଥିଲେ ।

ଭୁବନେଶ୍ୱର ରହଣି ସମୟରେ ପ୍ରସେନ୍‌ଜିତ୍ ରାଜ୍ୟ ଗ୍ରନ୍ଥାଗାରକୁ ଯାଇ ପଢ଼ାପଢ଼ି କରନ୍ତି । ରାଜ୍ୟ ଗ୍ରନ୍ଥାଗାରର ନିୟମିତ ପାଠକ-ସଭ୍ୟ ବି ହୋଇଗଲେ । ସକାଳ ଆଠଟାରୁ ଦଶଟା ରାଜ୍ୟ ଗ୍ରନ୍ଥାଗାରକୁ ଅଧ୍ୟୟନ ପାଇଁ ଯାଆନ୍ତି । ପ୍ରସେନ୍‌ଜିତ୍‌ଙ୍କର ଆଧ୍ୟାତ୍ମିକ ଭିତ୍ତିଭୂମି କିଞ୍ଚିତ୍ ଦୃଢ଼ଥିବାରୁ ସେ ଅରବିନ୍ଦଙ୍କ ସାବିତ୍ରୀ ମହାକାବ୍ୟ ଓ ଅନ୍ୟାନ୍ୟ ଆଧ୍ୟାତ୍ମିକ ସାହିତ୍ୟ ପଢ଼ିବାକୁ ଲାଗିଲେ । ଶ୍ରୀମା-ଶ୍ରୀ ଅରବିନ୍ଦ ପାଠଚକ୍ରରେ ବି ଯୋଗଦେଲେ । ଠାକୁର ଅନୁକୂଳ ଚନ୍ଦ୍ରଙ୍କର ଆଧ୍ୟାତ୍ମିକ ସାହିତ୍ୟ ପଢ଼ିଲେ । ଅନୁକୂଳଚନ୍ଦ୍ରଙ୍କର ଜଣେ ଭକ୍ତ ତାଙ୍କୁ ଅନୁକୂଳ ଚନ୍ଦ୍ରଙ୍କ ଉପରେ ହେଉଥିବା ଆଧ୍ୟାତ୍ମିକ ଆଲୋଚନା ଚକ୍ରକୁ ବି ମଝିରେ ମଝିରେ ନେଇଯାଆନ୍ତି । ପ୍ରସେନ୍‌ଜିତ୍ ଉଭୟ ଆଧ୍ୟାତ୍ମିକ ସଂସ୍ଥାର କର୍ମକର୍ତ୍ତାମାନଙ୍କ ସହ ପରିଚିତ ହୋଇଗଲେ ।

ପ୍ରସେନ୍‌ଜିତ୍ ଦେଖିଲେ ଶ୍ରୀମା-ଶ୍ରୀଅରବିନ୍ଦ ପାଠଚକ୍ରକୁ ରାଜ୍ୟ ଆମ୍ବ ଉନ୍ନୟନ ନିଗମର ଏମ୍.ଡି. ମିଶ୍ର ସାହେବ ଆସୁଛନ୍ତି । ସେଥିରେ ସେ ଜଣେ କର୍ମକର୍ତ୍ତା ବି ଅଛନ୍ତି । ଅଥଚ ଅନ୍ୟାୟ ଭାବେ ଅସମୟରେ ଚେୟାରମ୍ୟାନ୍ ସାହୁଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ମୃତ୍ତିକା ସଂରକ୍ଷଣ ନିର୍ଦ୍ଦେଶକଙ୍କର ପୋଷ୍ଟିଂ ଅର୍ଡରକୁ ଅପେକ୍ଷା ନକରି ଏକତରଫା ପ୍ରସେନଜିତ୍‌ଙ୍କୁ ରିଲିଭ୍ କରିଦେଲେ । ସେ ଆମ୍ବ ଉନ୍ନୟନ ନିଗମରେ କର୍ତ୍ତବ୍ୟରତ ଥିଲାବେଳେ, ଏମ୍.ଡି.ଙ୍କ ନାଁ କହି ଅଫିସ୍ କିରାଣୀମାନେ ତାଙ୍କ ଦରମାରୁ ବଟି ବି କାଟି ରଖିଛନ୍ତି । ପ୍ରଥମେ ପ୍ରଥମେ ସେ ପ୍ରତିବାଦ କଲେ । ମାତ୍ର ନିଗମରେ ଅବସ୍ଥାପିତ ହେଉଥିବା ଟେକ୍ନିକାଲ୍ ଅଫିସରମାନେ ଏପରି ନିଜ ଦରମାରୁ ବଟି ଦେଇ ଆସୁଛନ୍ତି, ପ୍ରସେନ୍‌ଜିତ୍ କ'ଣ ଅଲଗା ? ମାଛ ତେଲରେ ତ ମାଛ ଭାଜିବା କଥା । କିଏ କ'ଣ ଦରମାରୁ ଦିଏ ? ଫିଲଡ଼ରେ କାମ କରାଇବା ପାଇଁ ଯେଉଁ ଆଡ଼ଭାନ୍ସ ନେଉଛନ୍ତି, ସେଥିରୁ ତ ମିଛ ଭାଉଚର ଓ ମଷ୍ଟରରୋଲ୍ କରି ଏହି ବଟି ପାଉଣା ଭରଣ କରାଯାଇପାରିବ । ଏତକ ଶିଖି ନଥିବା ଲୋକ ଚାକିରି କରିବାକୁ କାହିଁକି ଆସିବ ? ଉପରିସ୍ଥ ଅଧିକାରୀ ଓ ସାଙ୍ଗ ସାଥୀଙ୍କର ଏପରି ଆଲୋଚନା ପ୍ରସେନ୍‌ଜିତ୍ ଅନେକବାର ଶୁଣିଛନ୍ତି । ମାତ୍ର ପ୍ରସେନ୍‌ଜିତ୍‌ଙ୍କ ଜିନ୍‌ରେ ପାରମ୍ପରିକ ନୈତିକତା ଓ ସଚ୍ଚୋଟ ପଣିଆ ପ୍ରତି ଯେଉଁ ଅନୁରକ୍ତି ରହିଛି, ତାହାର ବିରୁଦ୍ଧରେ ସେ କିପରି କାର୍ଯ୍ୟ କରି ପାରିବେ ? ଏ ପ୍ରଶ୍ନର ଉତ୍ତର ପ୍ରସେନ୍‌ଜିତ୍ ଏ ପର୍ଯ୍ୟନ୍ତ ବାରମ୍ବାର ଚିନ୍ତା କରି ମଧ୍ୟ ତାଙ୍କ ଅନ୍ତରରୁ ପାଇ ପାରି ନାହାନ୍ତି । ଅଧସ୍ତନ କର୍ମଚାରୀଙ୍କଠାରୁ ପଇସା

ଖାଇବା ଏବଂ ଶ୍ରୀମା-ଅରବିନ୍ଦ ପାଠ ଚକ୍ରରେ ଯୋଗଦେବା ଏମ୍.ଡି. ମିଶ୍ର ସାହେବଙ୍କ ପକ୍ଷରେ କିପରି ଏକକାଳୀନ ଭାବେ ଘଟିପାରୁଛି - ପ୍ରସେନ୍‌ଜିତ୍‌ଙ୍କ ସ୍ଫଟିକ ସ୍ୱଚ୍ଛ ବିବେକ ଆକଳନ କରିପାରେ ନାହିଁ ।

ବିନା ପୋଷ୍ଟିଂରେ ୩ ମାସ କାଳ ପ୍ରସେନ୍‌ଜିତ୍ ନିର୍ଦ୍ଦେଶାଳୟରେ ଅପେକ୍ଷା କରି ରହି ଥାଆନ୍ତି । ଠାକୁର ଅନୁକୂଳ ଚନ୍ଦ୍ରଙ୍କର ବାର୍ଷିକ ଜନ୍ମୋତ୍ସବ ପଡ଼ିଲା । ଭୁବନେଶ୍ୱରରେ ଖୁବ୍ ବଡ଼ ସମାରୋହ ହେଲା । ରାଜ୍ୟ ଏବଂ ରାଜ୍ୟ ବାହାରୁ ହଜାର ହଜାର ଭକ୍ତଙ୍କର ସମାବେଶ । ପ୍ରସେନ୍‌ଜିତ୍ ତିନି ଦିନ ବ୍ୟାପୀ ଜନ୍ମୋତ୍ସବର ଉଦ୍‌ଘାଟନୀ ସଭାରେ ଯୋଗ ଦେବାକୁ ଗଲେ । ଦେଖିଲେ ମୁଖ୍ୟ ଅତିଥିଭାବେ ଯୋଗ ଦେଇଛନ୍ତି ତାଙ୍କ ବିଭାଗର ନିର୍ଦ୍ଦେଶକ ରଥ ସାହେବ । ଆଦର୍ଶ ପରିବାର ଗଠନ ଅନୁକୂଳ ଚନ୍ଦ୍ରଙ୍କ ଆଭିମୁଖ୍ୟ ଓ ଦିଗ୍‌ଦର୍ଶନ ଉପରେ ପ୍ରାୟ ଏକ ଘଣ୍ଟା କାଳ ଶ୍ରୀଯୁକ୍ତ ରଥ ତାଙ୍କ ମୁଖ୍ୟ ଅତିଥି ଅଭିଭାଷଣରେ ଅବଲୀଳା କ୍ରମେ କହି ଚାଲିଲେ । ଶ୍ରୋତୃ ମଣ୍ଡଳୀରୁ ଘନ ଘନ କରତାଳି । ମୁଖ୍ୟ ଅତିଥି କହିଲେ - ଯଦି ସବୁ ପରିବାର ଆଦର୍ଶ ପରିବାର ରୂପେ ଗଢ଼ି ଉଠନ୍ତି, ତେବେ ସମାଜ ବଦଳିଯିବ, ଶାସନ ବି ବଦଳିଯିବ । ଅନ୍ୟାୟ, ଦୁର୍ନୀତି ଆପେ ଆପେ ଅପସରି ଯିବ । ପ୍ରସେନ୍‌ଜିତ୍ ନିର୍ଦ୍ଦେଶକ ରଥ ସାହେବଙ୍କ ଉଦ୍‌ବୋଧନ ଶୁଣିଲାପରେ ଆଶାବାଦୀ ହେଲେ ଯେ, ତାଙ୍କ ପ୍ରତି ଯେଉଁ ଅନ୍ୟାୟ କରାଯାଇଛି, ତାହାର ନିରାକରଣ ନିଶ୍ଚୟ ନିର୍ଦ୍ଦେଶକ କରିବେ ।

ପ୍ରସେନ୍‌ଜିତ୍‌ଙ୍କ ସହପାଠୀ ନଗେନ୍ଦ୍ର କିନ୍ତୁ ଦୀର୍ଘ ଆଠ ବର୍ଷ ହେଲା କଟକ-ଆଠଗଡ଼ରେ ଅବସ୍ଥାପିତ ହୋଇଛନ୍ତି । ପ୍ରସେନ୍‌ଜିତ୍‌ଙ୍କ ସହ ସାକ୍ଷାତ ହେବାରୁ ନଗେନ୍ଦ୍ର ଏକାଧିକ ଥର କହିଥିରେ - ଆରେ, ମୋ ସାଙ୍ଗରେ ଆସ, ବେଶୀ ନୁହେଁ, ଚାରି ପାଞ୍ଚ ହଜାର ନେଇ ବୁଢ଼ାକୁ କ୍ୱାଟରରେ ଦେଖା କରାଇ ଦେବି । ତୁ ଏଇ ଭୁବନେଶ୍ୱରରେ କୌଣସି ଷ୍ଟେସନାରୀ ଜବ୍‌ରେ ରହିଯିବୁ । କୌଣସି ସର୍ଭେ କିମ୍ବା ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍‌ରେ ଜୁନିଅର୍ ସାଇଣ୍ଟିଷ୍ଟ୍ ହୋଇ କେତେ ବର୍ଷ ପାଇଁ ରହି ପାରିବୁ । ତୋର ଯେଉଁ ତଥାକଥିତ ଭଣ୍ଡ ବାବାଜୀଗୁଡ଼ାକ ପ୍ରତି ଅହେତୁକ ମାନିଆ - କଟକ ମେଡ଼ିକାଲ୍ କଲେଜର ମେଣ୍ଟାଲ୍ ହେଲ୍‌ଥ ଇନ୍‌ଷ୍ଟିଚ୍ୟୁଟ୍‌ରେ ଚିକିତ୍ସିତ ହେଲେ ବରଂ ଭଲ ହୋଇଯିବୁ । ଆରେ, କାମ କଲ କି ନକଲ କ'ଣ କିଏ ଦେଖୁଛି । ଅସଲ ହେଲା - ଦାମ୍ । ତୁ ତ ସେତକ କରିବୁ ନାହିଁ । ଚାକିରିରେ ହଇରାଣ ହେବୁ ନାହିଁ ତ, ଆଉ କିଏ ହେବ ? ମୁଁ କ'ଣ ମାହାଳିଆ ଘର ପାଖରେ ଅଛି ? ବୁଢ଼ାକୁ ମଝିରେ ମଝିରେ ଫଳେ ପୁଷ୍ପେ ପୂଜା କରୁଥିବାରୁ ଆଠଗଡ଼ରେ ଆଠ ବର୍ଷ ହେଲା ରହିଲାଣି । ମୁଁ କ'ଣ ହେଡ୍ କ୍ୱାର୍ଟରରେ ରହୁଛି ? ସବୁବେଳେ କଟକରେ କି ଭୁବନେଶ୍ୱରରେ । ଜନ କଲ୍ୟାଣ

କ୍ଲବ୍‌ର ମାସିକ କବିତା ପାଠରେ ତ ମାସର ଶେଷ ଶନିବାର ଦିନ ଯୋଗ ଦେବାର କଥା, ନିଶ୍ଚୟ ଯୋଗ ଦେବି ।

ନଗେନ୍ଦ୍ରଙ୍କ କଥା ପ୍ରସେନ୍‌ଜିତ୍ ଗ୍ରହଣ କଲେ ନାହିଁ । କିପରି ଚାରି ପାଞ୍ଚ ହଜାର ନେଇ ନିର୍ଦ୍ଦେଶକଙ୍କ କ୍ୱାର୍ଟରକୁ ଯିବେ ? ଅନୁକୂଳଚନ୍ଦ୍ରଙ୍କ ଅନୁଗାମୀ ନିର୍ଦ୍ଦେଶକଙ୍କୁ କେମିତି ସେ ଉତ୍‌କୋଚ ଯାଚିବେ ? ନଗେନ୍ଦ୍ର ତାଙ୍କୁ ଫଶେଇ ଦେବା ପାଇଁ ଏପରି କହୁଛି । ନଗେନ୍ଦ୍ର ପ୍ରସେନ୍‌ଜିତ୍‌ଙ୍କ ପ୍ରତି କଲେଜରେ ପଢୁଥିବା ସମୟରୁ ଈର୍ଷାନ୍ୱିତ । କାରଣ ସାଧାରଣ ଜ୍ଞାନ, କ୍ୱିଜ୍ କମ୍ପିଟିସନ୍ ଆଦିରେ ପ୍ରସେନ୍‌ଜିତ୍ ସବୁବେଳେ ଟପର୍ । ପୁଣି ଦ୍ୱିତୀୟ ସେମେଷ୍ଟର୍ 'ଆଗ୍ରୋନମି'ରେ ଏତେ ସୁନ୍ଦର ଉତ୍ତର ଦେଇଥିଲେ ଯେ ଡିନ୍ ଡକ୍ଟର ମହାଲିକ୍ ପ୍ରସେନ୍‌ଜିତ୍‌ଙ୍କ 'ଆନ୍‌ସର ପେପର୍' କ୍ଲାସରେ ପଢ଼ି ଶୁଣାଇଲେ । ଯାହା ଥିଲା ଥିଲା, ଏ ଘଟଣାରେ ନଗେନ୍ଦ୍ରଙ୍କର ଅସୂୟା ଦ୍ୱିଗୁଣିତ ହୋଇଗଲା । ହଷ୍ଟେଲ୍ ରହଣିର ଅବଶିଷ୍ଟ ଦିନ ଗୁଡ଼ିକରେ ପ୍ରସେନ୍‌ଜିତ୍ ନଗେନ୍ଦ୍ରଙ୍କ ହାବଭାବ ଓ ବ୍ୟବହାରରୁ ଏହା ଅନୁଭବ କରିଛନ୍ତି ।

ତେଣୁ ଆଜି ନଗେନ୍ଦ୍ର ଯେଉଁ ପ୍ରସ୍ତାବ ଦେଉଛି, ତାହା ପୂର୍ବ ଅସୂୟାର ପ୍ରତିଫଳନ ନୁହେଁ ତ ? ପ୍ରସେନ୍‌ଜିତ୍ ବିଶ୍ୱାସ କରି ଅପେକ୍ଷା କଲେ – ନିଶ୍ଚୟ ନିର୍ଦ୍ଦେଶକ ତାଙ୍କୁ ନ୍ୟାୟ ବିଚାର ଦେବେ । ଚାରିମାସ ପରେ ଡାଇରେକ୍ଟର ସାହେବ, ତାଙ୍କ ଖାସ୍ କାମାରାକୁ ଡାକି ଏକ ବଦଳି ଆଦେଶ ଧରାଇଦେଲେ ପ୍ରସେନ୍‌ଜିତ୍‌ଙ୍କୁ । ଉତ୍ସୁକତା ସହକାରେ ପ୍ରସେନ୍‌ଜିତ୍ ଅର୍ଡରଟି ପଢ଼ିଗଲେ । ତାଙ୍କର ବଦଳି ହୋଇଛି ମାଲ୍‌କାନ୍‌ଗିରି କନିଷ୍ଠ ଅଧିକାରୀ ଭାବେ ।

ସାହସ ସଞ୍ଚୟ କରି ପ୍ରସେନ୍‌ଜିତ୍ ପଚାରିଲେ – ସାର୍, ଏ କ'ଣ ହେଲା ? ଆପଣ ତ ମୋତେ ଭୁବନେଶ୍ୱର ପାଖାପାଖି ପୋଷ୍ଟିଂ ଦେବା ପାଇଁ କହିଥିଲେ । ଆପଣଙ୍କ କଥା ମାନି ମୁଁ ଚାରିମାସ ଅପେକ୍ଷା କରି ରହିଛି ଓ ପ୍ରତ୍ୟହ ନିର୍ଦ୍ଦେଶାଳୟରେ ହାଜିରା ଦେଇ ଆସୁଛି । ପ୍ରସେନ୍‌ଜିତ୍‌ଙ୍କୁ ଅଧିକ କହିବାକୁ ସୁଯୋଗ ନ ଦେଇ ଡାଇରେକ୍ଟର୍ କଠୋର ଓ କର୍କଶ ସ୍ୱରରେ ଆଦେଶ ଦେଇ କହିଲେ – କିଏ ତୁମକୁ ଏଠାରେ ଅଧିଆ ପଡ଼ି ରହିବାକୁ କହିଥିଲା ? ତୁମେ ମନ୍ତ୍ରୀ କି ଏମ୍.ଏଲ୍.ଏ.ଙ୍କ ସୁପାରିଶ ଆଣି ପାରିଥିଲେ, ମୁଁ କ'ଣ ବ୍ୟବସ୍ଥା କରିଥାନ୍ତି । ତୁମେ ଏତେ ନି ପାରିଲା ବୋଲି କ'ଣ ମୁଁ ଜାଣିଥିଲି ? ଏ ଚାରିମାସ ପାଇଁ ଛୁଟି ଦରଖାସ୍ତ କରି ତୁରନ୍ତ ଯାଇ ମାଲ୍‌କାନ୍‌ଗିରିରେ ଜଏନ୍ କର । ନଚେତ୍ ତୁମ ବିରୁଦ୍ଧରେ 'ଡିସିପ୍ଲିନାରୀ ପ୍ରୋସିଡିଙ୍ଗସ୍' ଆରମ୍ଭ ହେବ ।

ପ୍ରସେନ୍‌ଜିତ୍ ବଦଳି ଆଦେଶଟି ଧରି ଆଉ ବିନା ବାକ୍ୟ ବ୍ୟୟରେ ନିର୍ଦ୍ଦେଶକଙ୍କ ପ୍ରକୋଷ୍ଠରୁ ବାହାରି ଆସିଲେ । ଆସିବା ବାଟରେ ନଗେନ୍ଦ୍ର କଥାଗୁଡ଼ାକ ତାଙ୍କ କର୍ଣ୍ଣ ଗହ୍ୱରରେ ଝଙ୍କୃତ ହୋଇ ଉଠୁଥିଲା । ଆଉ ଶ୍ରୀମା-ଅରବିନ୍ଦ ପାଠଚକ୍ରରେ ରାଜ୍ୟ ଆମ୍ବ ଉନ୍ନୟନ ନିଗମର ଏମ୍.ଡି. ମିଶ୍ର ସାହେବଙ୍କ ଭାଷଣ ଏବଂ ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଜନ୍ମୋତ୍ସବରେ ନିର୍ଦ୍ଦେଶକ ରଥ ସାହେବଙ୍କ ଆଦର୍ଶ ପରିବାର ଗଠନ ନିମନ୍ତେ ବହୁ ଭାବଭଙ୍ଗି ସମନ୍ୱିତ ଉଦ୍‌ବୋଧନ ମିଳିତ ଭାବେ ନଗେନ୍ଦ୍ରଙ୍କ ବାସ୍ତବବାଦୀ କଥାଗୁଡ଼ାକ ସହ ସଂଘାତର ତରଙ୍ଗ ସୃଷ୍ଟି କରୁଥିଲା । ମନର ବେଦନା ଓ ଉତ୍ତେଜନାକୁ ଲାଘବ କରିବା ପାଇଁ ପ୍ରସେନ୍‌ଜିତ୍ ଏକ ଟି ଷ୍ଟଲରେ କପେ ଚା ପିଇ ନେଲେ ।

ମାଲ୍‌କାନ୍‌ଗିରି ବଦଳି ଆଦେଶ ଧରି ପ୍ରସେନ୍‌ଜିତ୍ ଘରକୁ ଫେରିଲେ । ତାଙ୍କର ଅବସରପ୍ରାପ୍ତ ଅଭିଜ୍ଞ ଉଚ୍ଚପଦସ୍ଥ ପ୍ରଶାସନିକ ଅଧିକାରୀ ବାପାଙ୍କ ସହ ପରାମର୍ଶ କଲେ । ବାପାଙ୍କ ଉପଦେଶ ଅନୁଯାୟୀ ଭୁବନେଶ୍ୱରରୁ ମାଲ୍‌କାନ୍‌ଗିରିର ଦୂରତାକୁ ହିସାବ କରି ଦଶ ଦିନ ଟ୍ୟାନ୍‌ଜିଟ୍ ସମୟ ମଧ୍ୟରେ ନିଜକୁ ପ୍ରସ୍ତୁତ କରିନେଲେ । ଠିକ୍ ଗାନ୍ଧି ଜୟନ୍ତୀ ବାସି ଅକ୍ଟୋବର ୩ରେ ମାଲ୍‌କାନଗିରିରେ ପହଞ୍ଚି କାର୍ଯ୍ୟ କ୍ଷେତ୍ରରେ ଯୋଗଦେଲେ ।

ଟାନ୍‌ଜିଟ୍ ସମୟ ମଧ୍ୟରେ ଘରେ ଥିଲାବେଳେ ପ୍ରସେନ୍‌ଜିତ୍ ବାପାଙ୍କ ସହ ସନ୍ଧ୍ୟାରେ ଆଲୋଚନା କରନ୍ତି ରାଜ୍ୟ ଆମ୍ବ ଉନ୍ନୟନ ନିଗମ ଏମ୍.ଡି: ଓ ବିଭାଗୀୟ ନିର୍ଦ୍ଦେଶକଙ୍କର ଦ୍ୱୈତ୍ୱ ବ୍ୟକ୍ତିତ୍ୱ ସମ୍ପର୍କରେ । ବହୁ ଅଭିଜ୍ଞତାରେ ଋଦ୍ଧିବନ୍ତ ଏବଂ ବହୁ ତୁଠରେ ପାଣି ପିଇ ୩୫ ବର୍ଷ ପ୍ରଶାସନିକ ଚାକିରି କରି ଅବସର ନେଇଥବା ବାପା କହନ୍ତି – ଆରେ, କେବଳ ସଦ୍‌ଗୁରୁମାନଙ୍କର ଭକ୍ତ ହୋଇଗଲେ କି ନିତ୍ୟ ସଦ୍‌ଗ୍ରନ୍ଥ ଅଧ୍ୟୟନ କଲେ କ'ଣ ମଣିଷ ପ୍ରକୃତି ରାତାରାତି ବଦଳିଯିବ ? ମଣିଷ ପ୍ରକୃତି ପରା କୁକୁର ଲାଙ୍ଗୁଳପରି । ତୋ ପ୍ରତି ଅନ୍ୟାୟ ହୋଇଛି ନିଶ୍ଚୟ । ଚେଷ୍ଟା କଲୁ, ଚାରିମାସ ଅପେକ୍ଷା କଲୁ । ଡାଇରେକ୍ଟର ତାଙ୍କ ପ୍ରତିଶ୍ରୁତି ରଖିଲେ ନାହିଁ । ତୁ ତ ଅନ୍ୟ ଦିଗଟି ପ୍ରତି ଦୃଷ୍ଟି ଦେବାକୁ ବିତସ୍ପୃହ । ମୁଁ ବି ବାପା ହିସାବରେ ତୋତେ ସେପରି ବାଟରେ ଯିବା ପାଇଁ ଉପଦେଶ ଦେବି ନାହିଁ । ବରଂ ଚାର୍ଜ ହସ୍ତାନ୍ତର ନ କରି ଆଡ଼ମିନିଷ୍ଟ୍ରିଟିଭ୍ ଟ୍ରିବ୍ୟୁନାଲକୁ ଯାଇ 'ଷ୍ଟେ' ଆଣିଥିଲେ, ତୋ ପ୍ରତି ହୋଇଥିବା ଅନ୍ୟାୟ ଓ ଅବିଚାର ନିରାକୃତ ହୋଇଥାନ୍ତା । ଆମେ ତ ସେ ବାଟ ଧରିଲେ ନାହିଁ । ସମୟ ଗଡ଼ି ଯାଇଛି । ଏବେ ମାଲକାନଗିରି ବଦଳି ଆଦେଶକୁ 'ଈଶ୍ୱର ଇଚ୍ଛା' ବୋଲି ଗ୍ରହଣ କରି ଭଲ ମନରେ ଯାଇ ଯୋଗ ଦିଏ । ବୁଝିଲୁ ବାବୁ ଏମିତି ଶୂନ୍ୟତାରେ ଅନେକ ଧୂଳିଝଡ଼ ଉଠିବ । ତାକୁ ଧୈର୍ଯ୍ୟ ଧରି ସମ୍ଭାଳିନେବାକୁ ହେବ । ତୁ, କାହିଁକି ଦବି ଯାଉଛୁ ।

ମାଲକାନ୍‌ଗିରି ଏକ ଆଦିବାସୀ ବହୁଳ ଜିଲ୍ଲା । ସାଧାରଣ ଆଦିବାସୀ ଲୋକେ ସରଳ, ନିରୀହ । ଗୋପୀ ମହାନ୍ତିଙ୍କ ଭାଷାରେ 'ଅମୃତର ସନ୍ତାନ' । ତୁ ଯାଆ କାମରେ ଯୋଗ ଦିଏ । ସବୁ ସୁଧୁରିଯିବ ।

ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କର ଖୁବ୍ ଜଣା ଥିଲେ, କୋରାପୁଟର ଜଣେ ଭୂତପୂର୍ବ ମନ୍ତ୍ରୀ । ତାଙ୍କୁ ଦେଖା କରିବାରୁ ସେ କହିଲେ, ମାଲକାନ୍ ଗିରିରେ ଯୋଗଦିଅ । ପ୍ରଥମେ ପ୍ରଥମେ ଘରଠାରୁ ଦୂରତା ଦୃଷ୍ଟିରୁ ତୁମକୁ ଅଡୁଆ ଲାଗିବ । ମାତ୍ର ସବୁ ଆରେଇ ଯିବ । କୋରାପୁଟ ପୋଷ୍ଟିଂ ହେଲେ, ଅଫିସର୍‌ମାନେ ପନିସ୍‌ମେଣ୍ଟ୍‌ରେ ଗଲେ ବୋଲି କାନ୍ଦିଥାନ୍ତି । ପୁଣି କୋରାପୁଟରେ କିଛି ବର୍ଷ ରହି ଏପଟକୁ ବଦଳି ହୋଇ ଆସିଲେ, କୋରାପୁଟ ଛାଡ଼ିଲାବେଳେ ମଧ୍ୟ କାନ୍ଦିଥାନ୍ତି । ଏମିତି ବାପା ଓ ବାପାଙ୍କ ବନ୍ଧୁ ପୂର୍ବତନ ମନ୍ତ୍ରୀଙ୍କ ପ୍ରବୋଧନା ପାଇ ପ୍ରସେନ୍‌ଜିତ୍ ମାଲ୍‌କାନ୍‌ଗିରିରେ ଯୋଗଦେଲେ । ଯୋଗଦେବା ଦିନ ତାଙ୍କର ମନରେ ସ୍ମରଣ ହେଲା - "**ତ୍ୱୟି ହୃଷୀକେଶ ହୃଦି ସ୍ଥିତେନ, ଯଥା ନିଯୁକ୍ତୋସ୍ମି ତଥା କରୋମି**" । ପୁଣି ମନକୁ ଆସିଲା - "**ନିନ୍ଦନ୍ତୁ ନୀତି ନିପୁଣା ସ୍ତୁବନ୍ତୁ ଯଦିବା, ଲକ୍ଷ୍ମୀ ସମାବିଶତୁ, ଗଚ୍ଛତୁ ବା ଯଥେଷ୍ଟଂ, ଅଦ୍ୟୈବ ମରଣମସ୍ତୁ ଯୁଗାନ୍ତରେବା, ନ୍ୟାଯ୍ୟାତ୍ ପଥ ପ୍ରବିଚଳନ୍ତି ନ ଧୀରାଃ**" । ସ୍ୱାମୀ ବିବେକାନନ୍ଦ ତ କହିଛନ୍ତି - 'ଫେସ୍ ଦ ବ୍ରୁଟ୍' । ବାଘ ହାବୁଡ଼ରେ ଯଦି ପଡ଼ିଲ, ତେବେ ତା ଆଖି ସହିତ ଆଖି ମିଳାଇ ଚାହଁ । ବାଘ ବଳେବଳେ ତୁମ ପାଖ ଛାଡ଼ି ପଳାଇଯିବ । ସାମାନ୍ୟ ଇତସ୍ତତଃ ହେଲେ ମୁହୂର୍ତ୍ତକେ ଝାମ୍ପିନେବ ।

ପ୍ରସେନ୍‌ଜିତ୍‌ଙ୍କ ପାଇଁ ଏହି ସବୁ ନୀତି ବାଣୀ ନୂଆ ନୁହେଁ । ପରସ୍ତ ପରସ୍ତ କରି ସେ ମହାପୁରୁଷମାନଙ୍କ ରଚନା ଓ ବାଣୀ ବାରମ୍ବାର ଅଧ୍ୟୟନ କରିଛନ୍ତି, ପ୍ରବଚନ ଶୁଣିଛନ୍ତି । ବାସ୍ତବିକ ସାଧୁ, ସତ୍‌ପୁରୁଷ, ସଦ୍‌ଗୁରୁ ଓ ଜଗତଗୁରୁମାନଙ୍କ ଉପଦେଶ ମାନି ଚଳିବା ବଡ଼ କଷ୍ଟସାଧ୍ୟ । ପ୍ରସେନ୍‌ଜିତ୍ ସେ ସବୁ ଗ୍ରନ୍ଥ ପଢ଼ିଲା ବେଳେ ବିମୋହିତ ହୋଇଯାଆନ୍ତି । ମାତ୍ର ଆଚରଣରେ ପରିଣତ କରି ପାରି ନାହାନ୍ତି । ଏହା ହିଁ ମାନବିକ ଦୁର୍ବଳତା । ତାକୁ କ'ଣ ଅତିକ୍ରମ କରିବା ଏତେ ସହଜ ? ଯିଏ ଅତିକ୍ରମ କରିଛି, ସେ ତା'ର ସ୍ୱାଦ ଜାଣିଛି । ଯିଏ ଅତିକ୍ରମ କରି ପାରି ନାହିଁ, ସେ ସଂସାର ଜଞ୍ଜାଳରେ ଘାଣ୍ଟି ହୋଇଛି । ଅସରନ୍ତି ଦୁଃଖ ପାଇଛି । ପ୍ରସେନ୍‌ଜିତ୍ ଏସବୁ ବୁଝି ମଧ୍ୟ ନ ବୁଝିଲା ପରି ରହିଯାଆନ୍ତି; ପୂର୍ବବତ୍ ଆଚରଣ କରନ୍ତି ।

ପ୍ରସେନ୍‌ଜିତ୍ ଦେଖୁଛନ୍ତି – ପୋଥି ବାଇଗଣ, ଆଉ ବାରି ବାଇଗଣ ମଧ୍ୟରେ କେତେ ତଫାତ୍ । ଚିପିଲିମା କୃଷି ମହାବିଦ୍ୟାଳୟରେ ପଢୁଥିଲାବେଳେ ଡିନ୍ ଆଉ

ପ୍ରଫେସରମାନେ କେତେ ସମ୍ଭାବନାମୟ ଭବିଷ୍ୟତର ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କର ବି ଥିଲା କେତେ ରଙ୍ଗିନ୍ ସ୍ୱପ୍ନ । ମାଲ୍ୟବନ୍ତ ଉପଖଣ୍ଡରେ କନିଷ୍ଠ ଅଧିକାରୀ ଓ ଓଡ଼ିଶା ରାଜ୍ୟ ଆମ୍ବ ଉନ୍ନୟନ ନିଗମ ଲିଃରେ ଆସିଷ୍ଟାଣ୍ଟ୍ ମ୍ୟାନେଜର୍ (ଟେକ୍ନିକାଲ୍) ଥିଲା ବେଳେ ସେ ଅଙ୍ଗେ ଲିଭେଇଛନ୍ତି - ବାସ୍ତବିକ୍ କଲେଜରେ ପଢ଼ା ଯାଇଥିବା ପାଠ, ଚାକିରି କରି କ୍ଷେତ୍ର ଉପରକୁ ଆସିଲେ ସବୁ କେମିତି ଓଲଟ ପାଲଟ ହୋଇଯାଉଛି । କାହା ସହିତ କାହାର ଖାପ ଖାଉ ନାହିଁ ।

ପ୍ରସେନ୍‌ଜିତ୍‌ଙ୍କୁ ଥରେ ବାପା କହୁଥିଲେ - ଆରେ, ସବୁବେଳେ ଦୁଇ ଯୁକ୍ତ ଦୁଇ ଚାରି ହୁଏ ନାହିଁ । ବେଳେବେଳେ ଦୁଇ ଦୁଇ ମିଶି ତିନି ହୁଏ; ଆଉ କେତେବେଳେ ସାଢ଼େଚାରି କି ପାଞ୍ଚ ହୁଏ । ଏପରି ମିଶାଣ ଫେଡ଼ାଣ ପ୍ରକ୍ରିୟାରେ ଗାଣିତିକ ସୂତ୍ର କାମ ଦିଏ ନାହିଁ । ଚାକିରିରେ ଯୋଗ ଦେଇ ମାଲ୍ୟବନ୍ତ ଉପଖଣ୍ଡ ଏବଂ ରାଜ୍ୟ ଆମ୍ବ ଉନ୍ନୟନ ନିଗମରେ ଅବସ୍ଥାପିତ ହେଲାପରେ ପ୍ରସେନ୍‌ଜିତ୍ ଏତକ ଉପଲବ୍ଧି କଲେ । ମାତ୍ର ପ୍ରଥମେ ପ୍ରଥମେ ବୁଝିପାରୁ ନଥିଲେ । ବାପାଙ୍କ କଥା ତାକୁ କେମିତି ଅଡୁଆ ଲାଗୁଥିଲା ।

ମାଲ୍ୟବନ୍ତ ଉପଖଣ୍ଡ ଓ ଆମ୍ବ ଉନ୍ନୟନ ନିଗମରେ ଥିଲାବେଳେ ମାସିକ ବେତନ ପାଇଲାବେଳେ କ୍ୟାସିଅର୍ ବିଭିନ୍ନ ବାବତରେ ହିସାବ କରି କାର୍ଯ୍ୟାଳୟ ମୁଖ୍ୟଙ୍କ ନିର୍ଦ୍ଦେଶ କ୍ରମେ ପାଞ୍ଚ-ଦଶ ପ୍ରତିଶତ ଦରମାରୁ କାଟି ନିଅନ୍ତି । ଏକକାଳୀନ ଗସ୍ତ ଖର୍ଚ୍ଚ କିମ୍ବା ଘରଭଡ଼ା ଦେଲାବେଳେ ଅଡ଼ିଟ୍ ପାର୍ଟିଙ୍କ ରହଣି ଖର୍ଚ୍ଚ, ତତ୍ତ୍ୱାବଧାନକାରୀ ନିରୀକ୍ଷକମାନଙ୍କ ଆଗମନ ଓ ଅବସ୍ଥାନ ସମ୍ପର୍କୀୟ ଅତିଥିଚର୍ଚ୍ଚା, ସବ୍‌ସିଡ଼ି ଦରରେ ବି ଚାଷୀମାନେ ଉନ୍ନତ ବିହନ ବହୁ ପ୍ରବର୍ତ୍ତନା, ପ୍ରୋତ୍ସାହନ ସତ୍ତ୍ୱେ ନ କିଣିବା ଦ୍ୱାରା ଯେଉଁ କ୍ଷତି, ତାର ଭରଣା ନାମରେ - ଏମିତି ଅନେକ ଆପାତ ବିଶ୍ୱାସଯୋଗ୍ୟ, ବରଂ ସଂଶୟାଚ୍ଛନ୍ନ ବାବତରେ ତାଙ୍କ ନ୍ୟାଯ୍ୟ ପ୍ରାପ୍ୟର ଅର୍ଦ୍ଧେକରୁ ଅଧିକ କାଟି ରଖୁଥିଲେ । ଏପରି ଭାବେ ତାଙ୍କ ଉଚିତ ପ୍ରାପ୍ୟରୁ ଅର୍ଥ କାଟି ନିଆଯାଉଥିବାରୁ ପ୍ରସେନ୍‌ଜିତ୍ ପ୍ରତିଥର ଯୁକ୍ତି କରନ୍ତି, ପ୍ରତିବାଦ କରି ଦରମା ନିଅନ୍ତି ନାହିଁ, ଏପରି କି ଝଗଡ଼ା ପର୍ଯ୍ୟନ୍ତ କଥା ଯାଇଛି ।

ଉପରସ୍ତରକୁ ଗୋପନୀୟ ପତ୍ରରେ ଏହି ଅନ୍ୟାୟ ବିରୁଦ୍ଧରେ ଜଣାଇଛନ୍ତି, ଆବେଦନ କରିଛନ୍ତି । ଫଳ କିଛି ହୋଇ ନାହିଁ । ବରଂ ଉପରିସ୍ଥ ଅଧିକାରୀ ରାଗିଯାଇ ତାଙ୍କର ଗୋଟିଏ ବର୍ଷର 'ଗୁପ୍ତ ଚରିତ୍ର ପଞ୍ଜିକା'ରେ ପ୍ରତିକୂଳ ମନ୍ତବ୍ୟ ଲିପିବଦ୍ଧ କରିଦେଲେ । ସେ ଯେତେଯୁକ୍ତି ଦର୍ଶାଇ ତାହାର ବିରୁଦ୍ଧରେ ଉତ୍ତର ଦେଲେ

ବି ତାହା ସେମିତି ରହିଲା, କଟିଲା ନାହିଁ । ବରଂ ଅସମୟରେ ବାରମ୍ବାର କଷ୍ଟସାଧ୍ୟ କାମ କରିବାକୁ ଦିଆ ଯାଇଛି ଏବଂ ଅସ୍ୱାସ୍ଥ୍ୟକର ସ୍ଥାନକୁ ବଦଳି ହୋଇଛି । ଚାକିରି ବଞ୍ଚାଇବା ଦୃଷ୍ଟିରୁ ବାଧ୍ୟ ହୋଇ ଶେଷରେ ଯୋଗ ଦେଇଛନ୍ତି । ମାଲକାନଗିରିରେ ଯୋଗଦେବା ତ ସେମିତି ଏକ ଦୃଷ୍ଟାନ୍ତ ।

ପ୍ରସେନ୍‌ଜିତ୍ କେତେଥର ଚାକରି ଛାଡ଼ିଦେବାକୁ ବାପାଙ୍କ ଆଗରେ ପ୍ରକାଶ କରିଛନ୍ତି । ଗାଁରେ ପନ୍ଦର ଏକର ଜମି ଗୋଟିଏ ପ୍ୟାଚ୍‌ରେ ଅଛି । ତାହାକୁ ଫାର୍ମ କଲେ ପେଟ ଅପୋଷା ରହିବ ନାହିଁ । ବରଂ ଆଉ କେତେ ଜଣଙ୍କୁ ବିଶେଷତଃ ସ୍ଥାନୀୟ କୃଷି-ଶ୍ରମିକମାନଙ୍କୁ ନିଯୁକ୍ତି ଦେଇହେବ । ଏକର ଜମିରେ ଫୁଲଚାଷ କରି କ୍ୟାପିଟାଲ୍ - ଭୁବନେଶ୍ୱରକୁ ଫୁଲ ଯୋଗାଇଲେ ଯଥେଷ୍ଟ ଅର୍ଥକରୀ ହେବ । ଅଧ ଏକର ଜମିରେ ପୋଖରୀଟିଏ ଖୋଳାଇ ମାଛ ଚାଷ କଲେ, ଯଥେଷ୍ଟ ଲାଭ ହେବ । ଜମି ପାଖରେ ବିଜୁଳି ଲାଇନ୍ ଯାଇଛି 'ସିକ୍ସ ଡାଇଆ' କୂଅ ଖୋଳି ଏକ ହର୍ସପାଉଆର୍ ପମ୍ପସେଟ୍ ବସାଇଲେ, ଜମିରେ ଜଳସେଚନ ହୋଇପାରିବ । ଦୁଇ ତିନି ଏକର ଜମିରେ ଚିନାବାଦମ ଚାଷ କଲେ, ତାଙ୍କର ଯୌଥ ପରିବାରର ଭରଣପୋଷଣ ହୋଇ ପାରିବ । ଏମିତି କେତେ ଯୋଜନା ଓ ପରିକଳ୍ପନା ପ୍ରସେନ୍‌ଜିତ୍‌ଙ୍କ ମନକୁ ଆସେ । ବାପାଙ୍କ ସହ କେତେଥର ଆଲୋଚନା କରିଛନ୍ତି ।

ମାତ୍ର ବାପା କୃଷି ଶ୍ରମିକ ସମସ୍ୟା କଥା ଉଠାନ୍ତି । ପଞ୍ଚମ ଜାତୀୟ ରାଜପଥ ସଂପ୍ରସାରଣ ଏବଂ ରାଜଧାନୀ ଭୁବନେଶ୍ୱରରେ ଆପାର୍ଟମେଣ୍ଟ୍‌ମାନ ଗଢ଼ି ଉଠୁଥିବାରୁ ତାଙ୍କ ଗାଁ ପାଖରେ ପନ୍ଦରଟା ପର୍ଯ୍ୟନ୍ତ କ୍ରସର ବସିଛି । ସେଥିପାଇଁ ତ ଶ୍ରମିକ କୁଳାଉ ନାହାନ୍ତି । ଜମିରେ ପଙ୍କ କାଦୁଅରେ କାମ କରିବାକୁ ହଳିଆ, ମୂଲିଆ ଆସିବେ କେଉଁଠୁ ? ଆସିଲେ ବି ଆଠ ଘଣ୍ଟା ଯାଗାରେ ଅତି ବେଶୀରେ ଚାରି ପାଞ୍ଚ ଘଣ୍ଟା ଏପଟ ସେପଟ ହୋଇ ସମୟ କଟାଇଦେବେ ଓ ଦିନକର ମଜୁରୀ ନେଇଯିବେ । ମଝିରେ ସେମାନଙ୍କୁ ମନ ନେବାକୁ ଚା' ପାଣି, ଏପରି କି ପରଟା ତରକାରୀର ବ୍ୟବସ୍ଥା କରିବାକୁ ହେବ । ତୁ କ'ଣ ଏ ସବୁ କରିପାରିବୁ ?

ବାପା ପୁଣି କହନ୍ତି – ଚାକିରିଟିଏ ପାଇଛୁ ବୋଲି କେତେ ଭଲ ଭଲ ଖାନ୍‌ଦାନ୍ ଘରୁ ବିବାହ ପ୍ରସ୍ତାବ ଆସୁଛି । ଝିଅମାନେ ଦେଖିବାକୁ ଯେପରି ସୁନ୍ଦର, ଏମ୍.ଏ. ସହିତ କମ୍ପ୍ୟୁଟର କୋର୍ସ ବି କମ୍ପ୍ଲିଟ୍ କରିଛନ୍ତି । କଟକ ଏସ୍.ପି.ଙ୍କ ଝିଅ ଏମ୍.ବି.ଏ. କରିଛି, ଦେଖିବାକୁ ଟିକିଏ ଶ୍ୟାମଳୀ । ଦ୍ରୌପଦୀ ତ ପୁଣି ଶ୍ୟାମଳୀ ଥିଲେ ? ରଙ୍ଗରୁ ମିଳିବ କ'ଣ ? ଅସଲ ହେଲା ଯୋଗ୍ୟତା, ଅନ୍ତର୍ନିହିତ ଗୁଣ – ତାହା ହିଁ ଝିଅମାନଙ୍କର

ସୌନ୍ଦର୍ଯ୍ୟ, କେବଳ ଝିଅ କାହିଁକି ? ପ୍ରତ୍ୟେକ ମଣିଷ ପକ୍ଷେ ଏହା ସତ୍ୟ । ଯୌତୁକ ବାବତକୁ 'ଫୋର୍ ହ୍ୱିଲର୍' ସହ ଟିଭି, ଫ୍ରିଜ୍, ତନି ଲକ୍ଷ ରେଡ଼ି କ୍ୟାସ୍ – କ'ଣ ମିଳିବ ନାହିଁ ? ଆଗ ବାହାଘରଟା ହୋଇଯାଉ । ଦଶବର୍ଷ ଚାକିରି ପୂରିଯାଉ । ଏବେ ତ ଆଇନ୍ ହେଲାଣି, ଦଶବର୍ଷ ଚାକିରି କରିଦେଲେ, ଜଣେ ସରକାରୀ କର୍ମଚାରୀ ପେନ୍‌ସନ୍ ପାଇବାକୁ ଯୋଗ୍ୟ । ଏତେ ସୁବିଧା ଥାଉ ଥାଉ ତୁ ଚାକିରି ଛାଡ଼ି ଦେବାକୁ ଚାହୁଁଛୁ ? ଟିକିଏ ସମୟ ଓ ପରିସ୍ଥିତି ସହିତ ଖାପଖୁଆଇ ଚଳିପାରିଲେ ତୁ ଯେଉଁ ଚାକରି ପାଇଛୁ, ପୁଣି ମୃତ୍ତିକା ସଂରକ୍ଷଣ ବିଭାଗରେ, ଆରେ ଏପରି ସୁଯୋଗ କ'ଣ ମିଳେ ? ସାକ୍ଷାତ୍ ସୁନା କ୍ଷେତ ! ସୁନା ଅଣ୍ଡା ଦେଉଥିବା କୁକୁଡ଼ା ସଙ୍ଗେ ସମାନ । କୁକୁଡ଼ା ସୁନା ଅଣ୍ଡା ଦେବା କଥା କହିଲେ, ଲୋକେ ବିଶ୍ୱାସ କରିବେ ନାହିଁ । ବରଂ ହସରେ ଉଡ଼ାଇଦେବେ । ତୁ ପାଇଥିବା ଚାକିରି ହିଁ ସୁନା ଅଣ୍ଡା ଦେଉଥିବା କୁକୁଡ଼ା । ବୁଝିଲୁ ?

ପ୍ରସେନ୍‌ଜିତ୍ ବାପାଙ୍କ ସ୍ୱରରେ ଓ କହିବା ଭଙ୍ଗିରେ କିଛିଟା ପରିବର୍ତ୍ତନ ଘଟିଥିବା ଅନୁଭବ କଲେ । ନୀତି ଓ ନୈତିକତାର ପ୍ରଶ୍ନ ଉପରେ ତାଙ୍କର ବାପା କେବେ ସାଲିସ୍ କରିଥିବା ସେ ଦେଖି ନାହାନ୍ତି । ବାପା ତାଙ୍କର କୋଡ଼ିଏ ବର୍ଷ ତଳେ ଆର୍.ଟି.ଓ. ଥାଆନ୍ତି । ନୂଆ ଅଫିସ୍ ଖୋଲି ଏକ 'ପରିବହନ ଅଞ୍ଚଳ'କୁ ସଂଗଠିତ କରିବା ପାଇଁ ବାଛି କରି ସରକାର ତାଙ୍କୁ ପଠାଇଥାନ୍ତି । ପ୍ରସେନ୍‌ଜିତ୍‌ଙ୍କ ବୟସ ସେତେବେଳେ ମାତ୍ର ଦଶ ବର୍ଷ । ଥରେ ରାତି ୯ଟାରେ ଜଣେ ଲୋକ ତାଙ୍କ ବସାକୁ ଆସି ଗୋଟାଏ ପ୍ୟାକେଟ୍ ଅର୍ଦ୍ଦଳି ପିଅନ ଯଦୁ ହାତରେ ବାପାଙ୍କୁ ଦେବା ପାଇଁ ଦେଲା । ଅର୍ଦ୍ଦଳି ନେଇ ବାପାଙ୍କୁ ଦେଲେ ଏବଂ କହିଲେ – ସାର୍, ଲୋକଟି ଅପେକ୍ଷା କରିଛନ୍ତି ସାକ୍ଷାତ୍ ପାଇଁ । ବାପା ବୈଠକ ଖାନାରେ ଆଗନ୍ତୁକଙ୍କୁ ବସାଇବା ପାଇଁ କହିଲେ । ଭଦ୍ରଲୋକ ଜଣକ ସାହସ ବାନ୍ଧି ବୈଠକଖାନା ଭିତରକୁ ଆସି ବସିଲେ । ପ୍ରସେନ୍‌ଜିତ୍‌ଙ୍କର ସ୍ପଷ୍ଟ ମନେ ଅଛି : ବାପା ପ୍ୟାକେଟ୍‌ଟି ଯିଆ ଭିତରେ ଦେଖି ନେଇଥିଲେ ଏବଂ ବୈଠକଖାନାକୁ ପ୍ରବେଶ କରି ଭଦ୍ର ଲୋକଙ୍କୁ କହିଲେ – ଏତେ କମ୍ ପଇସାରେ ବୁଦ୍ଧ ଖୋଲ୍ ଆର୍.ଟି.ଓ. ଶୁଭେନ୍ଦୁ ରାଏଙ୍କୁ କିଣି ନେବାକୁ ସାହସ କଲ ? ଆଜି ଛାଡ଼ି ଦେଲି । ଆଉ ଏପରି ଦୁଃସାହସ କରିବ ନାହିଁ । ବିନା ପରମିଟ୍‌ରେ ବେଆଇନ୍ ଭାବେ ଗାଡ଼ି ଚଳାଉଛ । ରାଜ୍ୟ ସରକାରଙ୍କୁ ହଜାର ହଜାର ଟଙ୍କାର ଟିକସ ଫାଙ୍କୁଛ । ଧରା ପଡ଼ିବାରୁ ମୋତେ ବଦନାମ କରିବା ପାଇଁ ଉଦ୍ୟମ କରୁଛ । ଏଇ ଟଙ୍କାରେ ଆଉ କିଛି ମିଶାଇ ତୁମର ଉଚିତ ଦେୟ ଅଫିସ୍‌ରେ ଦାଖଲ କରି ଦିଅ । କେସ୍ ଫଇସଲା କରି ଗାଡ଼ି ରିଲିଜ୍ କରିଦେବି ।

ବାପାଙ୍କର ରୁଦ୍ରମୂର୍ତ୍ତି ଓ କଠୋରଭାଷା ନିକଟରେ ଆଗନ୍ତୁକ ଆଉ କିଛି କହିବାକୁ ସାହସ କଲା ନାହିଁ । ବାଏଁ ବାଏଁ ଆସନରୁ ଉଠି ବାହାରକୁ ଚାଲିଗଲା, ତା'ପରେ ବୁଦ୍ଧ ଖୋଲ୍ ଆର୍.ଟି.ଓ. ଅଫିସରେ ସବୁ ପ୍ରକାର ଦୁର୍ନୀତି ଓ ବେନିୟମ କାମ ଚାଲିଛି ବୋଲି ତୁହାକୁ ତୁହା ଖବର କାଗଜରେ ବାହାରିଲା । ଏହା ଉପରେ କଲେକ୍ଟର, ଟ୍ରାନ୍ସପୋର୍ଟ କମିଶନର ଆର୍.ଟି.ଓ.ଙ୍କୁ କୈଫତ୍ ମାଗିଲେ । ବାପା ଏହାର ଜବାବ ଦେଲେ । ଇନ୍‌କ୍ୱାରି ବି ହେଲା । ସବୁ ମିଛ, ମନଗଢ଼ା ଅତିରଞ୍ଜିତ ଅଭିଯୋଗ ବୋଲି ପ୍ରମାଣିତ ହେଲା ।

ତେବେ ସାତ ଆଠ ମାସ ପରେ ଏକ ବଦଳି ଆଦେଶ ଆସିଲା ଯେ ପଡ଼ୋଶୀ ଆର୍.ଟି.ଓ.ଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ଶୁଭେନ୍ଦୁ ରାୟ ରିଲିଭ୍ ହୋଇଯାଆନ୍ତୁ ଏବଂ ପରବର୍ତ୍ତୀ ପୋଷ୍ଟିଂ ପାଇଁ ରାଜସ୍ୱ ବିଭାଗରେ ଜଏନିଂ ରିପୋର୍ଟ ଦେଇ ଅବସ୍ଥାପନ ପାଇଁ ଅପେକ୍ଷା କରନ୍ତୁ । ଏପରି ଅଚାନକ ବର୍ଷ ମଝିରେ ବଦଳି ହେତୁ ବାପା ପ୍ରଥମେ ଇତସ୍ତତଃ ହୋଇ ଯାଇଥିଲେ ବୋଲି ପ୍ରସେନ୍‌ଜିତ୍ ସେ ପିଲା ବୟସରେ ଲକ୍ଷ୍ୟ କରିଥିଲେ । ମାତ୍ର କାଳ ବିଳମ୍ବ ନକରି ଆଗନ୍ତୁକ ଆର୍.ଟି.ଓ.ଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ଦେଇଥିଲେ ଏବଂ ନୂତନ ପୋଷ୍ଟିଂ ନିମନ୍ତେ ଭୁବନେଶ୍ୱର ଯାଇ ରେଭେନ୍ୟୁ ଡିପାର୍ଟମେଣ୍ଟରେ ଜଏନିଂ ରିପୋର୍ଟ ସମର୍ପଣ କରିଥିଲେ ।

ଶୁଭେନ୍ଦୁ ରାୟଙ୍କ ଯାଗାରେ କୌଣସି ନୂତନ ଆର୍.ଟି.ଓ. ବୁଦ୍ଧ ଖୋଲରେ ଅବସ୍ଥାପିତ ହୋଇ ନଥିଲେ । କେବଳ ପଡ଼ୋଶୀ ପରିବହନ ଅଞ୍ଚଳର ଆର୍.ଟି.ଓ. ଅତିରିକ୍ତ ଦାୟିତ୍ୱରେ ରହିଥିଲେ । ଦିନେ ପ୍ରାୟ ରାତି ସାଢ଼େ ନଅଟାରେ ଶୁଭେନ୍ଦୁ ବାବୁଙ୍କ ବୁଦ୍ଧ ଖୋଲ ବସାରେ ଦୁଇଜଣ ବ୍ୟକ୍ତି କଥା ହେବାକୁ ଆସିଲେ । ସେମାନେ କହିଲେ – ଆଜ୍ଞା, ଆପଣଙ୍କର କର୍ତ୍ତବ୍ୟ ସମ୍ପାଦନ କରିବାରେ କିଛି ତ୍ରୁଟି ନାହିଁ । କେବଳ ଆପଣଙ୍କର ପ୍ରଶାସନ କଡ଼ା ହୋଇଯିବାରୁ ଆପଣଙ୍କ କାର୍ଯ୍ୟାଳୟର କେତେକ କିରାଣୀ ଏବଂ ଅଧସ୍ତନ ଅଧିକାରୀ ମନଗଢ଼ା ଅଭିଯୋଗ ସୃଷ୍ଟି କରି ଉପରିସ୍ଥ ବିଭିନ୍ନ ମହଲକୁ ବେନାମି ପେଟିସନ୍ ପକାଇଲେ । ଫଳରେ ଆପଣଙ୍କର ବଦଳି ହେଲା । ଆପଣଙ୍କ ଯାଗାରେ କେହି ଅଫିସର୍ ସ୍ୱାଧୀନ ଭାବେ ଅବସ୍ଥାପିତ ଏ ପର୍ଯ୍ୟନ୍ତ ହେବାକୁ ନାହାନ୍ତି । କେବଳ କନକପୁର ଆର୍.ଟି.ଓ. ଆଡ଼ିସନାଲ୍ ଦାୟିତ୍ୱରେ ଅଛନ୍ତି । ଆପଣଙ୍କୁ ବି ରେଭେନ୍ୟୁ ବିଭାଗ କୌଣସିଠାରେ ଅବସ୍ଥାପିତ କରି ନାହାନ୍ତି । ଆଜ୍ଞା, କିଛି ଭାବିବେ ନାହିଁ, ଆମ ସାଙ୍ଗରେ ଆସନ୍ତୁ, ମ୍ୟାଡ଼ାମ୍‌ଙ୍କୁ ଭେଟ କରାଇଦେବୁ । ବେଶୀ କିଛି ନୁହେଁ, ମାତ୍ର ପନ୍ଦର ହଜାର ହୋଇଗଲେ, ପୁଣି ଆପଣ ଏଠାରେ ଆର୍.ଟି.ଓ. ହୋଇ ଯୋଗଦେବେ । ଶୁଭେନ୍ଦୁ ରାୟଙ୍କର ସ୍ପଷ୍ଟ ଉତ୍ତର ଥିଲା – ମୁଁ ତ ଏହି ନୂଆ

ପରିବହନ ଆଞ୍ଚଳିକ କାର୍ଯ୍ୟାଳୟକୁ ଗଡ଼ିବା ପାଇଁ ପୋଷ୍ଟିଂ ହେଲାବେଳେ ପନ୍ଦର ପଇସା କାହାକୁ ଦବାକୁ ପଡ଼ି ନଥିଲା । ଆଜି ପନ୍ଦର ହଜାର ନେଇ ମ୍ୟାଡ଼ାମଙ୍କୁ ଦେଖା କରି ରହିବାକୁ ଚେଷ୍ଟା କରିବି କାହିଁକି ? ଅଢ଼େଇ ବର୍ଷ ତ ରହିଲି । ଆଉ ରହି ରହି ବର୍ଷେ ରହିଥାନ୍ତି । ନ ହେଲା ନାହିଁ । ଏଠି ମୋ ଆବଶ୍ୟକତା ସରିଗଲା । ଏଣିକି ସ୍ଥାନୀୟ ଲୋକ ପ୍ରତିନିଧି, ବିଭାଗୀୟ ମନ୍ତ୍ରୀ, ସଚିବ ଓ ଟ୍ରାନ୍ସପୋର୍ଟ କମିଶନର ତାଙ୍କ ନିଜ ଲୋକଙ୍କୁ ଆଣି ଏଠାରେ ରଖିବାକୁ ଚାହୁଁଛନ୍ତି । ତେଣୁ ମୋତେ ବଦଳି କରିବା ପାଇଁ ଏକ ସୁଚିନ୍ତିତ ପ୍ଲଟ୍ ମୋ ବିରୁଦ୍ଧରେ ସୃଷ୍ଟି କରାଗଲା । ଏବଂ ବୁକ୍ ସର୍କୁଲାର୍ - ୪୨ର ନିର୍ଦ୍ଦେଶ ପ୍ରତି ଆଖି ବୁଜି ଦେଇ ମୋତେ ଏକ ତରଫା ଭାବେ ବିନା ପୋଷ୍ଟିଂରେ ରିଲିଭ୍ କରି ଦିଆଗଲା । ନିଯୁକ୍ତି ଦାତା- ସରକାରଙ୍କ ସହିତ କ'ଣ ଲଢ଼େଇ କରିବି ? ଘର ଢିଙ୍କି କୁମ୍ଭୀର ଯେତେବେଳେ, ଏଠି ଆଉ ରହିବା ବିପଦଜନକ । ତେଣୁ ଆଉ ବିପଦ ପଡ଼ିବା ପୂର୍ବରୁ ଶ୍ରୀଜଗନ୍ନାଥ ମୋତେ ଏଠାରୁ ଉଦ୍ଧାର କରି ନେବାର ବାଟ ଖୋଲି ଦେଇଛନ୍ତି । ଭଦ୍ରବ୍ୟକ୍ତି ଦୁଇଜଣ ନିରସ୍ତ ହୋଇ ଫେରିଗଲେ । ସେମାନେ ରୁଲିଂପାର୍ଟିର ଦୁଇ ଜଣ ବ୍ରୋକର୍ ଥିଲେ । ଏମିତି ବିନା ମେଘରେ କୁଳିଶ ସୃଷ୍ଟି କରିବା ଏମାନଙ୍କର କାମ । ଏମାନେ ହର୍ତ୍ତାକର୍ତ୍ତା, ପରିତ୍ରାଣ ଦାତା । ଘରେ ନିଆଁ ଲଗାଇ ପୁଣି ପାଣି ଅନ୍ୟ ଦ୍ୱାରା ପକାଇ ଲିଭାଇବାରେ ଏମାନେ ସିଦ୍ଧହସ୍ତ । ନିଆଁ ଲଗାଇବା ଓ ଲିଭାଇବା ମଧ୍ୟରେ ସେମାନେ ନିଜ ପାଇଁ ମୋଟା ଅଙ୍କର ଖୁବ୍ ଭଲ ଦୁଇ ପଇସା ରୋଜଗାର କରି ନିଅନ୍ତି । ପେଟ ପୋଷ ନାହିଁ ଦୋଷ । ସେମାନେ ତ ପୁଣି ଭବ୍ୟସଭ୍ୟ ନାଗରିକ ଭାବେ ଏ ଗଣତନ୍ତ୍ର ଯୁଗରେ ବଞ୍ଚିବେ !

ବାପା ଶୁଭେନ୍ଦୁ ରାୟଙ୍କର ଏତାଦୃଶ ବିନା ପୋଷ୍ଟିଂରେ ବଦଳି ଦ୍ୱାରା ସମୁଦାୟ ପରିବାରକୁ ଦୁର୍ଦ୍ଦଶାର ସମ୍ମୁଖୀନ ହେବାକୁ ପଡ଼ିଥିଲା, ପ୍ରସେନ୍‌ଜିତ୍ ସେଥିରୁ ବାଦ୍ ପଡ଼ି ନଥିଲେ । ତାଙ୍କର ପାଠ ପଢ଼ାରେ ବ୍ୟାଘାତ ସୃଷ୍ଟି ହୋଇଥିଲା । ନୀତି ପ୍ରତି ଏତେ ନିଷ୍ଠା ଓ ଅନୁରକ୍ତି ହେତୁ ତାଙ୍କର ବାପା ଏପରି ଦୁର୍ଦ୍ଦଶା ନିଜ ପାଇଁ ଓ ପରିବାର ପାଇଁ ଟାଣି ଆଣିଥିଲେ । ସେପରି ମାନସିକ ଦୃଢ଼ତା ଓ ମନୋବଳ ନଥିଲେ, ଜଣେ ଏପରି ଦୁଃପରିସ୍ଥିତିର ସମ୍ମୁଖୀନ ହେବା କଷ୍ଟକର । ଏପରି କଷ୍ଟ ସହିଷ୍ଣୁତା ଓ ଧୈର୍ଯ୍ୟ ତାଙ୍କ ପୁଅ ପ୍ରସେନ୍‌ଜିତ୍‌ର ନଥିବା କଥା ଅନୁଭବ କରି ଅବସରପ୍ରାପ୍ତ ବରିଷ୍ଠ ପ୍ରଶାସନିକ ଅଧିକାରୀ ଶୁଭେନ୍ଦୁରାୟ ପୁଅ ପ୍ରସେନ୍‌ଜିତ୍‌ଙ୍କୁ ଏପରି 'ମଧ୍ୟମ ପନ୍ଥା' ଅବଲମ୍ବନ କରିବାକୁ ସୂଚନା ଦେଇଥିଲେ । ବାପାଙ୍କର ସ୍ୱର ବଦଳିଥିବା ଅନୁଭବ କରି ମଧ୍ୟ 'ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟଂ ଆପଦ୍‌କାଳ ଉପସ୍ଥିତେ' ନ୍ୟାୟରେ ମାଲକାନ୍ ଗିରିରେ ଯୋଗଦେଇଥିଲେ ।

ପ୍ରସେନ୍ ଜିତ୍‌ଙ୍କର ମନେ ଅଛି - ସେ ଆମ୍ବ ଉନ୍ନୟନ ନିଗମରୁ ଏକତରଫା ଭାବେ ରିଲିଭ୍ ହୋଇ ପୋଷ୍ଟିଂ ନିମନ୍ତେ ୩ ମାସ ନିର୍ଦ୍ଦେଶାଳୟରେ ଅପେକ୍ଷା କରିଥିଲାଭଳି ତାଙ୍କର ବାପା ବୁଦ୍ଧ ଖୋଲ ଆଞ୍ଚଳିକ ପରିବହନ କାର୍ଯ୍ୟାଳୟରୁ ଏକତରଫା ରିଲିଭ୍ ହୋଇ ପାଞ୍ଚ ମାସ ଅପେକ୍ଷା କରିଥିଲେ ପୋଷ୍ଟିଂ ନିମନ୍ତେ । ବାପା ପୁଅ ଉଭୟ ସେମାନଙ୍କର ଚାକିରି କ୍ୟାରିଅର୍‌ରେ ଏକ ପ୍ରକାର ପରିସ୍ଥିତି ଦେଇ ଗତି କରିଛନ୍ତି । ପ୍ରସେନ୍‌ଜିତ୍ ବାପାଙ୍କଠାରୁ ଶୁଣିଥିଲେ - ସାଧାରଣ ପ୍ରଶାସନ ବିଭାଗର ସଚିବାଳୟ ଅଳିନ୍ଦରେ ସାକ୍ଷାତ ପାଇଁ ସ୍ଲିପ୍ ଦେଇ ଦୁଇ ଘଣ୍ଟା ଅପେକ୍ଷା କରିବା ପରେ ମଧ୍ୟ ବିଭାଗୀୟ ସ୍ୱତନ୍ତ୍ର ଶାସନ ସଚିବଙ୍କ ସହିତ ସାକ୍ଷାତ ମିଳି ନଥିଲା । ସେ ଦିନ କେତେ ଦୁଃଖରେ ବୁଦ୍ଧ ଖୋଲ ଫେରି ବାବା ଏ କଥା ବୋଉକୁ କହିଥିବା ପ୍ରସେନ୍‌ଜିତ୍ ଶୁଣିଛନ୍ତି ।

ପ୍ରସେନ୍‌ଜିତ୍‌ଙ୍କ ବାପା ରାଜ୍ୟ ଶ୍ରମ ବିଭାଗରେ ଅଣ୍ଡର୍ ସେକ୍ରେଟେରୀ ଥିଲାବେଳେ ସୁପ୍ରିମ୍‌କୋର୍ଟରେ ଏକ ମାମଲା ସମ୍ପର୍କରେ ଦିଲ୍ଲୀ ଯାଇଥିଲେ । ବାପା ଓଡ଼ିଶା ନିବାସରେ ରହୁଥାନ୍ତି । ଦିନ ନଅଟାବେଳେ ଏକ ଫୋନ୍ ଆସିଲା - 'ଓଡ଼ିଶା ସରକାରଙ୍କ ସାଧାରଣ ପ୍ରସାସନ ବିଭାଗର ସ୍ପେସିଆଲ୍ ସେକ୍ରେଟେରୀ ଡକ୍ଟର ଦାସ୍ ଆପଣଙ୍କୁ ଆପଣଙ୍କ ରୁମ୍‌ରେ ସାକ୍ଷାତ କରିବାକୁ ଚାହୁଁଛନ୍ତି । ଟିକିଏ ଅପେକ୍ଷା ରଖିବେ ।'

ପ୍ରସେନ୍‌ଜିତ୍‌ଙ୍କ ବାପା ଶୁଭେନ୍ଦୁ ରାୟ ବିଶ୍ୱାସ କରି ପାରିଲେ ନାହିଁ, ଜଣେ ସ୍ପେସିଆଲ୍ ସେକ୍ରେଟେରୀ, ପୁଣି ଜି.ଏ. ଡିପାର୍ଟମେଣ୍ଟର, ଚାହୁଁଛନ୍ତି, ଲେବର ଡିପାର୍ଟମେଣ୍ଟର ଅଣ୍ଡର ସେକ୍ରେଟେରୀ ଡକ୍ଟର ଶୁଭେନ୍ଦୁ ରାୟଙ୍କୁ ଓଡ଼ିଶା ନିବାସରେ ତାଙ୍କ ରୁମ୍‌ରେ ଦେଖା କରିବା ପାଇଁ ! ଫୋନ୍ କରୁଥିବା ବ୍ୟକ୍ତିଙ୍କଠାରୁ ଶୁଭେନ୍ଦୁ ବାବୁ ବୁଝିନେଲେ, ସ୍ପେସାଲ୍ ସେକ୍ରେଟେରୀ ଡକ୍ଟର ଦାସ ଓଡ଼ିଆ ଭବନର କେଉଁ ରୁମ୍‌ରେ ରହୁଛନ୍ତି । ଫୋନ୍ କରୁଥିବା ଭଦ୍ରବ୍ୟକ୍ତି ଜଣାଇଲେ - ରୁମ୍ ନମ୍ବର - ୧୦୭ ।

ଶୁଭେନ୍ଦୁ ରାୟ ଆଉ କାଳ ବିଳମ୍ବ ନ କରି ତତ୍‌କ୍ଷଣାତ୍ ନିଜ ରୁମ୍‌ରୁ ବାହାରି ଆସି ଲିଫ୍ଟରେ ତଳକୁ ଓହ୍ଲାଇଲେ ଓଡ଼ିଶା ଭବନରେ ଡକ୍ଟର ଦାସ, ସ୍ପେଶାଲ୍ ସେକ୍ରେଟେରୀଙ୍କୁ ଦେଖା କରିବା ପାଇଁ । ଲିଫ୍ଟରୁ ଓହ୍ଲାଇଛନ୍ତି ତ, ଦେଖିଲେ, ଡକ୍ଟର ଦାସ ସେହି ଲିଫ୍ଟରେ ଉପରକୁ ଉଠିବା ପାଇଁ ଉଦ୍ୟତ ହେଉଛନ୍ତି । ଶୁଭେନ୍ଦୁବାବୁ ଡକ୍ଟର ଦାସଙ୍କ ଉଦ୍ଦେଶ୍ୟରେ କହିଲେ - ସାର୍, ଏକ୍ସକ୍ୟୁଜ୍ ମି, ଆଇ ଆମ୍ ଡକ୍ଟର ରାୟ । କରମର୍ଦ୍ଦନ କରି ସ୍ପେଶାଲ୍ ସେକ୍ରେଟେରୀ ସମ୍ଭାଷଣ କରିଥିଲେ - ହାଲୋ ! ଡକ୍ଟର ରାୟ, ହୋଆଏ ଡିଡ୍ ୟୁ କମ୍ ଡାଉନ୍ ? ଆଇ ଉଆଣ୍ଟେଡ୍ ୟୁ ଟୁ ବି ଅନ୍

ଇଓର୍ ରୁମ୍ । ଦେୟାର ଆଇ ଉଆଣ୍ଟ ଟୁ ହାଭ୍ ସମ୍ ଡିସ୍କସନ୍ ଉଇଥ୍ ୟୁ । ଲେଟ୍ ଅସ୍ ଗୋ ଅପ୍ ।

ଡକ୍ଟର ଶୁଭେନ୍ଦୁ ରାୟ, ଓଡ଼ିଶା ଶ୍ରମ ବିଭାଗ ଅଣ୍ଡର୍ ସେକ୍ରେଟେରୀ ଓ ସାଧାରଣ ପ୍ରଶାସନ ବିଭାଗ ସ୍ପେଶାଲ୍ ସେକ୍ରେଟେରୀ ଡକ୍ଟର ଦାସ ଓଡ଼ିଶା ନିବାସର ସେହି ରୁମ୍‌ରେ ଏକତ୍ରିତ ହେଲେ, ଯେଉଁଥିରେ ଶୁଭେନ୍ଦୁ ବାବୁ ସୁପ୍ରିମ୍ କୋର୍ଟ କାମରେ ଆସି ଗତ ଚାରି ଦିନ ହେଲା ରହିଛନ୍ତି । ସ୍ପେଶାଲ୍ ସେକ୍ରେଟେରୀ ଡକ୍ଟର ଦାସ କହିଲେ – 'ଡୁ ୟୁ ଥିଙ୍କ ଦ ସ୍ପେଶାଲ୍ ସେକ୍ରେଟେରୀ ଅଫ୍ ଜି.ଏ. ଡିପାର୍ଟମେଣ୍ଟ ଅଫ୍ ଓରିଶା ହାଜ୍ କମ୍ ଟୁ ମିଟ୍ ଦ ଅଣ୍ଡର୍ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଲେବର ଡିପାର୍ଟମେଣ୍ଟ ? ନୋ, ୱାନ୍ ସ୍କଲର୍ ହାଜ୍ କମ୍ ଟୁ ମିଟ୍ ଆନାଦର୍ ସ୍କଲର୍ । ଆଇ ହାଭ୍ ହାର୍ଡ ଦାଟ୍ ୟୁ ହାଭ୍ ଡନ୍ ପି.ଏଚ୍.ଡି. ରିସର୍ଚ୍ଚ ଅନ୍ ଟ୍ରାଇବାଲସ ଅଫ୍ ଓରିଶା । ଦ୍ୟାଟସ୍ ହ୍ୱାଏ, ଆଇ ଆଭ୍ କମ୍ ଟୁ ଡିସ୍କସ୍ ଉଇଥ୍ ୟୁ ।'

ଶୁଭେନ୍ଦୁ ବାବୁ କହିଲେ – ସାର୍, ଓଡ଼ିଶାର ବାଆଷଠି ସମ୍ପ୍ରଦାୟ ଆଦିବାସୀମାନଙ୍କର ଭାରତ ସ୍ୱାଧୀନତା ପ୍ରାପ୍ତି ପରେ ଦେଶ ସାଧାରଣ ତନ୍ତ୍ର ହେବାଠାରୁ ଅର୍ଥାତ୍ ୧୯୫୦ରୁ ୧୯୮୦ (ପଞ୍ଚମ ପଞ୍ଚ ବାର୍ଷିକ ଯୋଜନା ଶେଷ) ପର୍ଯ୍ୟନ୍ତ କିପରି ଅର୍ଥନୈତିକ, ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବିକାଶ ଘଟିଛି, ତାହା ଉପରେ ଅଧ୍ୟୟନ କରିଛି । ସ୍ପେଶାଲସେକ୍ରେଟେରୀ ଡକ୍ଟର ଦାସ – ନାଇସ୍ ଉଆନ୍ । ୟୁ ହାଭ୍ ଡନ୍ ଏ ମାର୍ଭିଲସ୍ ପିସ୍ ଅଫ୍ ପାଇଓନିୟରିଂ ଉଆର୍କ ଫର ଦ ଷ୍ଟେଟ୍ ଆଣ୍ଡ ଫର ଦ ନେସନ୍ ଆଜ୍ ଉଏଲ୍ !

ପ୍ରାୟ ଅଧଘଣ୍ଟା କଥାବାର୍ତ୍ତା ମଧ୍ୟରେ ଶୁଭେନ୍ଦୁ ବାବୁ କହିଲେ – ସାର୍, କ୍ଷମା କରିବେ; ମୋତେ ଅନ୍ୟାୟରେ ଏକତରଫା ବୁଦ୍ଧ ଖୋଲ୍ ଆର୍.ଟି.ଓ. ପଦବୀରୁ କନକପୁରର ଆର୍.ଟି.ଓ.ଙ୍କୁ ପଠାଇ ଜବରଦସ୍ତ ଚାର୍ଜ ହସ୍ତାନ୍ତର କରି ଚାଲି ଆସିବାକୁ ବାଧ୍ୟ କରାଗଲା । ମୁଁ ରେଭେନ୍ୟୁ ଡିପାର୍ଟମେଣ୍ଟରେ ଜଏନ୍ କଲି । ରେଭେନ୍ୟୁ ଡିପାର୍ଟମେଣ୍ଟ ମୋତେ ମାଲ୍‌କାନ୍‌ଗିରିଠାରେ କାଡ଼ା ଆଡ଼ମିନିଷ୍ଟ୍ରେଟର୍ ଭାବେ ଯୋଗ ଦେବାକୁ ଆଦେଶ କଲେ । ମୋର ସେତେବେଳେ ଏକମାତ୍ର ଝିଅର ବିଭାଘର ପାଇଁ ଭୁବନେଶ୍ୱର ପଟେ ରହିବା ଅତି ଜରୁରୀ ଥିଲା । ଏକଥା ମୁଁ ରେଭେନ୍ୟୁ ସେକ୍ରେଟେରିଙ୍କୁ ଭେଟି କହିଲି । ରିପ୍ରେଜେଣ୍ଟେସନ୍ ବି ଦେଲି । ଫଳ କିଛି ହେଲା ନାହିଁ । ମାଲ୍‌କାନ୍‌ଗିରି କାଡ଼ାରେ ଆଡ଼ମିନିଷ୍ଟ୍ରେଟର୍ ରୂପେ ଯୋଗଦେବା ପାଇଁ ଆଦେଶ ବାହାରିଲା । ସରକାରଙ୍କ ଯୁକ୍ତି, ମୁଁ ଆଦିବାସୀମାନଙ୍କ ଉପରେ ପିଏଚ୍.ଡି. ଥେସିସ୍ କରିଛି । ଏହା

ମୋର ଯୋଗ୍ୟତା ଓ କର୍ମ ଦକ୍ଷତାକୁ ବହୁଗୁଣ ବଢ଼ାଇ ଦେଇଛି ଆଦିବାସୀମାନଙ୍କ ସେବା କରିବା ପାଇଁ । ଅନନ୍ୟୋପାୟ ହୋଇ ମୋ ଆସୋସିଏସନ୍ କର୍ମକର୍ତ୍ତାମାନଙ୍କୁ ମୋ ଅସୁବିଧା କଥା କହିଲି । ସେମାନେ ରେଭେନ୍ୟୁ ମିନିଷ୍ଟରଙ୍କୁ ଭେଟି ମୋ ବଦଳି ବିଷୟରେ କହିଲେ । ଆସୋସିଏସନ୍ ପ୍ରେସିଡେଣ୍ଟ ରେଭେନ୍ୟୁ ମିନିଷ୍ଟରଙ୍କୁ କହିଲେ - ସାର୍, ଆମ ଆସୋସିଏସନ୍ କେବେ ପର୍ସନାଲ୍ ମାଟର୍‌ରେ ସରକାରଙ୍କୁ କହିବାକୁ ଆସି ନଥାଏ । ଡକ୍ଟର ଶୁଭେନ୍ଦୁ ରାୟ କେବଳ ଜଣେ ରେଭେନ୍ୟୁ ଅଫିସର୍ ନୁହନ୍ତି, ସେ ଜଣେ ଓଡ଼ିଆ ଭାଷା-ସାହିତ୍ୟର ଜଣାଶୁଣା କବି ଓ ଲେଖକ । ସେ ରାଜ୍ୟର ଆଦିବାସୀମାନଙ୍କର ଅର୍ଥନୈତିକ, ସାମାଜିକ ସମସ୍ୟା ଉପରେ ପ୍ରଥମ ଓ.ଏ.ଏସ୍. ଅଫିସର୍ ଯେ କି ପିଏଚ୍.ଡି. ଗବେଷଣା କରିଛନ୍ତି । ତାଙ୍କୁ ଅନ୍ୟାୟ ଭାବେ ଅମୂଳକ, ଭିତ୍ତିହୀନ ଅଭିଯୋଗ ଅଣଯାଇ ଆକ୍ରୋଶମୂଳକ ପଦକ୍ଷେପ ସ୍ୱରୂପ ମାଲ୍‌କାନ୍‌ଗିରି କାଡ଼ା ଆଡ୍‌ମିନିଷ୍ଟ୍ରେଟର୍ ରୂପେ ବଦଳି ହୋଇଛି । ସାର୍, ମିନିଷ୍ଟର୍ ଭାବେ ଆପଣ ହିଁ ସରକାର । ୟୁ କ୍ୟାନ୍ ଡୁ ଆଣ୍ଡ ଅନ୍ ଡୁ ଥିଙ୍ଗ୍‌ସ୍ । ସାର୍ ଡକ୍ଟର ଶୁଭେନ୍ଦୁ ରାୟଙ୍କର କେତେକ ବ୍ୟକ୍ତିଗତ ଅସୁବିଧା ଅଛି, ବର୍ତ୍ତମାନ ଅବସ୍ଥାରେ ମାଲ୍‌କାନ୍‌ଗିରି ବଦଳି ହୋଇଯିବାରେ । ସେ ମଧ୍ୟ ସେହି ମର୍ମରେ ସରକାରଙ୍କୁ ଆବେଦନ କରିଛନ୍ତି । ତାଙ୍କର ଆବେଦନକୁ ବିଚାର କରି ତାଙ୍କୁ ସେକ୍ରେଟେରିଏଟ୍‌ରେ କୌଣସି ବିଭାଗରେ ଅଣ୍ଡର୍ ସେକ୍ରେଟେରୀ ଭାବେ ଅବସ୍ଥାପିତ କରାଯାଉ ବୋଲି ଆପଣ ଦୟାକରି ଫାଇଲ୍‌ରେ ଆଦେଶ ଦେଲେ, ଡକ୍ଟର ଶୁଭେନ୍ଦୁଙ୍କର ପ୍ରଭୂତ କଲ୍ୟାଣ ସାଧିତ ହେବ । ରାଜସ୍ୱ ମନ୍ତ୍ରୀ ମହୋଦୟ, ସେହି ମର୍ମରେ ଫାଇଲରେ ଆଦେଶ ଲିପିବଦ୍ଧ କଲେ - ହିଜ୍ ସର୍ଭିସେସ୍ ଆର୍ ପ୍ଲେସ୍‌ଡ୍ ଅଣ୍ଡର୍ ଜି.ଏ. ଡିପାର୍ଟମେଣ୍ଟ ଫର୍ ହିଜ୍ ପୋଷ୍ଟିଂ ଆଜ୍ ଆନ୍ ଅଣ୍ଡର୍ ସେକ୍ରେଟେରୀ । ସେହି ଆଦେଶ ସମ୍ବଳିତ ନଥି ଜି.ଏ. ଡିପାର୍ଟମେଣ୍ଟକୁ ପଠାଗଲା । ମାତ୍ର ଜି.ଏ. ଡିପାର୍ଟମେଣ୍ଟରେ ଫାଇଲ୍ ପଡ଼ି ରହିଲା ।

ମୋର ପୋଷ୍ଟିଂ ସମ୍ପର୍କରେ କୌଣସି ଆଦେଶ ହେଲା ନାହିଁ । ମୋତେ ପାଞ୍ଚ ମାସ ଅପେକ୍ଷା କରିବାକୁ ପଡ଼ିଲା । ମୋ ପରିବାର ମୋର ପୂର୍ବଷ୍ଟେସନ ବୁଦ୍ଧ ଖୋଲ୍‌ରେ ରହିଲେ । ମୁଁ ପାଞ୍ଚ ମାସ ହେଲା ଦରମା ପାଇଲି ନାହିଁ । ଝିଅ ବିଭାଘର ଜରୁରି ଥିଲା । ଏକାଧିକ ଥର ଜି.ଏ. ଡିପାର୍ଟମେଣ୍ଟ କରିଡ଼ର୍‌ରେ ଅପେକ୍ଷା କରିଛି । ଆଡିସ୍‌ନାଲ୍ ସେକ୍ରେଟେରି ଆଇ.ସି. ଦାସଙ୍କୁ ବହୁବାର ଭେଟିଛି । ସେ କହିଲେ - ତୁମ ଉପରେ ସରକାର ସନ୍ତୁଷ୍ଟ ନୁହନ୍ତି । ତୁମକୁ ମାଲ୍‌କାନ୍‌ଗିରି ଯିବାକୁ ହେବ । ନିରୁପାୟ ହୋଇ ଦିନେ ସ୍ପେଷାଲ୍ ସେକ୍ରେଟେରୀଙ୍କୁ (ଆପଣଙ୍କୁ) ଦେଖା କରି ମୋ ଗୁହାରି ଜଣାଇବାକୁ ସ୍ଲିପ୍ ଦେଲି । ଦୀର୍ଘ ଦୁଇଘଣ୍ଟା ଅପେକ୍ଷା କଲି । ଆପଣ ସାର୍,

ମୋତେ ସାକ୍ଷାତ ପାଇଁ ନ ଡାକି ଚାମ୍ବର ଛାଡ଼ି ମୁଖ୍ୟମନ୍ତ୍ରୀଙ୍କଠାରୁ ଡାକରା ପାଇ ଚାଲିଗଲେ । ମୁଁ ସାକ୍ଷାତ୍ କରି ପାରିଲି ନାହିଁ । ବଡ଼ ମନଦୁଃଖରେ ବୁଦ୍ଧଖୋଲ ଫେରି ଆସିଲି । ଅବଶ୍ୟ ପାଞ୍ଚ ମାସ ପରେ ମୋତେ ଲେବର୍ ଡିପାର୍ଟମେଣ୍ଟର ଅଣ୍ଡର୍ ସେକ୍ରେଟେରି ଭାବେ ପୋଷ୍ଟିଂ ମିଳିଲା ।

ସ୍ପେଷାଲ୍ ସେକ୍ରେଟେରୀ ଡକ୍ଟର ଦାସ୍ ସାମାନ୍ୟ ନିଷ୍ପ୍ରଭ ହୋଇ କହିଲେ- ଡକ୍ଟର ରାୟ, ଓ୍ୱାନ୍ ସେକ୍ରେଟେରୀ ଓ୍ୱାଜ୍ ଚେଷିଙ୍ଗ୍ ଆଫ୍ଟର ୟୁ । ହାଓଭର୍ ଗଡ୍ ଇଜ୍ ଦେୟାର୍ ଟୁ ହେଲ୍ପ ୟୁ । ସଙ୍ଗେ ସଙ୍ଗେ ଶୁଭେନ୍ଦୁ ବାବୁ ବିନମ୍ରତା ସହିତ କହିଲେ - ସାର୍, ଗଡ୍ ଇଜ ଦେୟାର ଫର୍ ଆଲ୍, ନଟ୍ ଫର ମି ଆଲୋନ୍ । ସ୍ପେଶାଲ୍ ସେକ୍ରେଟେରୀ କଥାକୁ ଏଇଠି ରଖିବା ପାଇଁ କହିଲେ - ଡକ୍ଟର ରାୟ, ପ୍ଲିଜ୍ ଫର୍ଗେଟ୍ ଇଟ୍ । ମୁଁ ଆପଣଙ୍କୁ ଅନୁରୋଧ କରିବାକୁ ଆସିଛି- ଆପଣ ଦିଲ୍ଲୀରୁ ଫେରିବା ପରେ ଏଇ ମାସ ୨୦ ତାରିଖରେ ୟୁନିଟ୍ ଫାଇଭ୍‌ରେ ଥିବା ମୋ ସରକାରୀ ବାସ ଭବନରେ ଆପଣଙ୍କ ଥେସିସ୍ ସହ ସାକ୍ଷାତ୍ କରିବେ । ଆପଣ କିପରି ଭାବେ ଓଡ଼ିଶାର ଆଦିବାସୀମାନଙ୍କର ସମସ୍ୟା ଉପରେ ଆଲୋଚନା କରିଛନ୍ତି ଓ ଦିଗ୍‌ଦର୍ଶନ ଦେଇଛନ୍ତି ଆପଣଙ୍କ ଥେସିସ୍‌ରୁ ତାହା ମୁଁ ଦେଖିବାକୁ ଚାହେଁ । ଡକ୍ଟର ଶୁଭେନ୍ଦୁ ରାୟ - ସାର୍ ଥେସିସ୍‌ର ମୋ ପର୍ସନାଲ୍ କପିଟି ମୋ ଗାଇଡ୍ ପ୍ରଫେସର ଜନ୍, ନେଇଛନ୍ତି । ତାଙ୍କଠାରୁ ଆଣି ଆପଣଙ୍କୁ ସାକ୍ଷାତ୍ କରିବି ।

ଏତିକିରେ ଅଣ୍ଡର୍ ସେକ୍ରେଟେରୀ ଡକ୍ଟର ରାୟ ଏବଂ ସ୍ପେଷାଲ୍ ସେକ୍ରେଟେରୀ ଡକ୍ଟର ଦାସ୍‌ଙ୍କର ଓଡ଼ିଶା ନିବାସରେ ସାକ୍ଷାତ୍ ଆଲୋଚନାର ପରିସମାପ୍ତି ଘଟିଥିଲା ।

ଏ କଥା ପ୍ରସେନ୍‌ଜିତ୍ ତାଙ୍କ ବାପାଙ୍କଠାରୁ ଭଲଭାବେ ଜାଣିଥିଲେ । କାରଣ ଚାକିରି ଜୀବନର କଟୁ ତୀକ୍ତ କଷାୟ ଅଭିଜ୍ଞତା ପ୍ରସଙ୍ଗରେ ଥରେ ଡକ୍ଟର ରାୟ ପୁଅ ପ୍ରସେନ୍‌ଜିତ୍‌ଙ୍କୁ କହୁଥିଲାବେଳେ ଏ ଘଟଣାଟି ବର୍ଣ୍ଣନା କରିଥିଲେ । ପ୍ରସେନ୍‌ଜିତ୍ ଏ ଘଟଣାରୁ ଅନେକ ଆତ୍ମବଳ, ଅନେକ ପ୍ରେରଣା ପାଇଛନ୍ତି । ଯେଉଁ ମାଲ୍‌କାନ୍‌ଗିରି ପୋଷ୍ଟିଂକୁ ତାଙ୍କର ବାପା ଦଶବର୍ଷ ଆଗେ ତାଙ୍କ ଆସୋସିଏସନ୍ ଜରିଆରେ ରାଜସ୍ୱ ମନ୍ତ୍ରୀଙ୍କ ଆଦେଶ ବଳରେ ଏଡ଼ାଇ ଦେଇ ଭୁବନେଶ୍ୱର ସେକ୍ରେଟେରିଏଟ୍‌ରେ ଅବସ୍ଥାପିତ ହୋଇ ପାରିଥିଲେ, ଏବେ ଦର୍ଶବର୍ଷ ପରେ ପ୍ରସେନ୍‌ଜିତ୍ ତିନିମାସ ଅପେକ୍ଷା କରି ଡାଇରେକ୍ଟରଙ୍କର ସକରାତ୍ମକ ପ୍ରତିଶ୍ରୁତି ସତ୍ତ୍ୱେ ଭୁବନେଶ୍ୱର ଛାଡ଼ି ମାଲ୍‌କାନ୍‌ଗିରିରେ 'ପର୍ମନେଣ୍ଟ ପୋଷ୍ଟିଂ' ପାଇଲେ ଏବଂ ବାପାଙ୍କ ପରାମର୍ଶ କ୍ରମେ ଯୋଗଦେଲେ । ଜଣେ ବିଭାଗୀୟ ମୁଖ୍ୟଙ୍କ ପ୍ରତିଶ୍ରୁତି ପାଣିର ଗାର ହୋଇଗଲା ।

ପ୍ରସେନ୍‌ଜିତ୍ ଶାସ୍ତ୍ରରେ ପଢ଼ିଛନ୍ତି – 'ଭାଗ୍ୟଂ ଫଳତି ସର୍ବତ୍ର, ନ ଚ ବିଦ୍ୟା, ନଚ ପୌରୁଷମ୍' । ଚାକିରି ଜୀବନରେ ଯାହା ଯେତେବେଳେ ଆସୁଛି ତାକୁ ଗ୍ରହଣ କରିଯିବା ଛଡ଼ା ଅନ୍ୟ ବାଟ ନାହିଁ । 'ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ' ।

ପ୍ରସେନ୍‌ଜିତ୍ ମାଲ୍‌କାନ୍‌ଗିରିରେ ଯୋଗଦେବାର ସାତ ଦିନ ମଧ୍ୟରେ ବଦଳି ହେଲା ଗୋବିନ୍ଦ ପାଟଣା କନିଷ୍ଠ ମୃତ୍ତିକା ସଂରକ୍ଷଣ ଅଧିକାରୀ ଭାବେ । ମାତ୍ର ସେଠାରେ ଅବସ୍ଥାପିତ ମୃତ୍ତିକା ସଂରକ୍ଷଣ ସହାୟକ ତାଙ୍କୁ ଚାର୍ଜ ହସ୍ତାନ୍ତର କଲେ ନାହିଁ । ପ୍ରସେନ୍‌ଜିତ୍ ମାଲକାନ୍‌ଗିରି ଫେରି ଆସି ଏ କଥା ଉପର ହାକିମଙ୍କୁ କହିଲେ । ଉପରିସ୍ଥ ଅଧିକାରୀ ନିର୍ଦ୍ଦେଶ ଦେଲେ – ଆପଣଙ୍କୁ ଗୋବିନ୍ଦ ପାଟଣା ମୃତ୍ତିକା ସଂରକ୍ଷଣ ସହାୟକ ଚାର୍ଜ ଦେଲେ ନାହିଁ ବୋଲି ରିପୋର୍ଟ ଦିଅନ୍ତୁ । ପ୍ରସେନ୍‌ଜିତ୍ ତାହା ହିଁ କରି ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଭୁବନେଶ୍ୱର ଛୁଟିରେ ଆସିଲେ । ଭୁବନେଶ୍ୱରରୁ ଫେରି ଦେଖନ୍ତି, ତାଙ୍କର ଉଆଟର୍ ସେଡ୍ ସ୍କିମ୍‌ରେ ଦୁଷ୍ମନ୍ତପୁରକୁ ବଦଳି ହୋଇଛି ।

ପ୍ରସେନ୍‌ଜିତ୍ ଏ ଆଦେଶ ପାଇ ନିସ୍ତବ୍ଧ ହୋଇଗଲେ । କାରଣ ଗୋବିନ୍ଦପାଟଣାରେ ପୋଷ୍ଟିଂ ଯୋଗୁଁ ସେ ଏକ ଭଡ଼ା ଘର ନେଇ ରହିବା ନିମନ୍ତେ ଏକ ହଜାର ଟଙ୍କା ଅଗ୍ରିମ ଦେଇଥିଲେ । ଏପରି ଅଚାନକ ଭାବେ ଦୁଷ୍ମନ୍ତପୁର ବଦଳି ହେବାରୁ ସେ ଗୋବିନ୍ଦପାଟଣା ଛାଡ଼ିବାକୁ ବାଧ୍ୟ ହେଲେ । ଏକ ହଜାର ଟଙ୍କା ଅଗ୍ରିମ୍ ଅଯଥା ପାଣିରେ ପଡ଼ିଲା । ଏପରି ଘନଘନ ବଦଳି ପାଇଁ କାହାକୁ ବା ପ୍ରସେନ୍‌ଜିତ୍ କହିବେ ? ଶୁଣିବାକୁ ପାଇଲେ, ଉଆଟର୍ ସେଡ୍ ସ୍କିମ୍‌ରେ ପୋଷ୍ଟିଂ ନ ହେବା ପାଇଁ ତାଙ୍କ ପୂର୍ବରୁ ବଦଳି ହୋଇଥିବା ଅଧିକାରୀ ମୋଟା ଅଙ୍କର ଅର୍ଥ ବିନିଯୋଗ କରିଥିଲେ । ପ୍ରସେନ୍‌ଜିତ୍ କେବିକେ ଜିଲାକୁ ନୂଆ । ତେଣୁ ଭିତରେ ଭିତରେ ତାଙ୍କୁ ଓଡ଼ିଶାର ସବୁଠାରୁ ମ୍ୟାଲେରିଆ ପ୍ରବଣ ଦୁଷ୍ମନ୍ତପୁର ବ୍ଲକ୍‌କୁ ବଦଳି ହେବ ବୋଲି ସେ ଅନୁମାନ କରି ପାରିଲେ ନାହିଁ ।

ପ୍ରସେନ୍‌ଜିତ୍ ଦୁଷ୍ମନ୍ତପୁରରେ ଯୋଗଦେଲେ । ହାତରେ ବୟସ ଥିବାରୁ ପ୍ରସେନଜିତ୍ ଆଇ.ଏ.ଏସ୍ ପ୍ରତିଯୋଗିତାମୂଳକ ପରୀକ୍ଷାରେ ବସିବା ପାଇଁ ପ୍ରାର୍ଥୀ ହୋଇଥିଲେ । ତେବେ ଦୁଷ୍ମନ୍ତପୁରରେ ଆଇ.ଏ.ଏସ୍. ପରୀକ୍ଷା ନିମନ୍ତେ ପ୍ରସ୍ତୁତି ପାଇଁ ଆଦୌ ଅନୁକୂଳ ପରିବେଶ ନଥିଲା । ଦୁଷ୍ମନ୍ତପୁରରେ ଦୁଇ ବର୍ଷ ରହଣି ମଧ୍ୟରେ ପ୍ରସେନ୍‌ଜିତ୍ ପ୍ରତିବର୍ଷ ସର୍ବ ଭାରତୀୟ ମିଳିତ ପ୍ରତିଯୋଗିତା ପରୀକ୍ଷା ପାଇଁ ପ୍ରାର୍ଥୀ ହୁଅନ୍ତି । ମାତ୍ର ପ୍ରିଲିମିନାରୀ ପରୀକ୍ଷା ପାଇଁ ବି ବସି ପାରନ୍ତି ନାହିଁ । ରହିବା ପାଇଁ ଦୁଷ୍ମନ୍ତପୁରରେ ସରକାର କ୍ୱାର୍ଟର କି ଭଡ଼ାରେ ବସାଘର ମିଳିଲା ନାହିଁ । ବିଡ଼ିଓଙ୍କୁ କହି ବ୍ଲକ୍ ଜେ.ଇ.ଙ୍କ ସହିତ ମିଶି ଗୋଟିଏ କ୍ୱାର୍ଟରରେ ରହିଲେ ।

ଦୁଷ୍ମନ୍ତପୁରରେ ବ୍ଲକ୍ ଅଫିସ୍ ଛଡ଼ା ଏକ ଘରୋଇ କଲେଜ ଏବଂ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଥିଲା । କଲେଜର ଅଧ୍ୟାପକ ଓ ପି.ଏଚ.ସି.ର ଯୁବ ଡାକ୍ତରଙ୍କ ସହ ପ୍ରସେନ୍‌ଜିତ୍ ମିଶିଗଲେ । ଆଇ.ଏ.ଏସ୍. ପ୍ରିପାରେସନ୍ ଧିମେଇ ଗଲା । ଅବଶ୍ୟ କଲେଜର ଭାରପ୍ରାପ୍ତ ଯୁବ ପ୍ରିନ୍‌ସିପାଲ୍ ମଧ୍ୟ ଆଇ.ଏ.ଏସ୍. ପାଇଁ ପ୍ରାର୍ଥୀଥିଲେ । ସେ ପ୍ରସେନ୍‌ଜିତ୍‌ଙ୍କ ବହି ସବୁର ସୁଯୋଗ ନେଲେ ସିନା, ପ୍ରସେନ୍‌ଜିତ୍ ଏଥିରେ ଉପକୃତ ହୋଇ ପାରିଲେ ନାହିଁ । ଦୁଇ ବର୍ଷ ରହଣି ମଧ୍ୟରେ ପ୍ରସେନ୍‌ଜିତ୍ ଦୁଇଥର ମ୍ୟାଲେରିଆରେ ପୀଡ଼ିତ ହୋଇ ଦୁଇମାସରୁ ଅଧିକ ସମୟ ମେଡ଼ିକାଲ ଛୁଟିରେ ରହିବାକୁ ବାଧ୍ୟ ହେଲେ ।

ଦୁଷ୍ମନ୍ତପୁର ବିଡ଼ିଓ ଜଣେ ଓ.ଏ.ଏସ୍. ଅଫିସର୍ । ସେ ଚାହିଁଥିଲେ ପ୍ରସେନ୍‌ଜିତ୍ ଗତାନୁଗତିକ କାର୍ଯ୍ୟ ଧାରାରେ ସାମିଲ୍ ହୋଇ ତାଙ୍କ ସହ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିବେ ବୋଲି । ମାତ୍ର ପ୍ରସେନ୍‌ଜିତ୍‌ଙ୍କର ସେଇ ପୁରୁଣା ମନୋବୃତ୍ତି ଏତେ ଘାତ ପ୍ରତିଘାତ ସତ୍ତ୍ୱେ ତାଙ୍କ ଭିତରୁ ପ୍ରଶମିତ ହୋଇ ନଥିଲା । ଫଳରେ ଚାରି ସହିତ ଚାରି ମିଶିଲେ କିପରି ଦଶ ହେବ କି ଆବଶ୍ୟକ ପଡ଼ିଲେ ଛଅ ହେବ, ଏହି କଳାରେ ପ୍ରସେନ୍‌ଜିତ୍ ପାରଦର୍ଶିତା ହାସଲ କରି ପାରିଲେ ନାହିଁ । କେତେ ମାସ ମଧ୍ୟରେ ପ୍ରସେନ୍‌ଜିତ୍ ବିଡ଼ିଓଙ୍କର ବିରାଗ ଭାଜନ ହୋଇଗଲେ । ବିଡ଼ିଓ ପ୍ରସେନ୍‌ଜିତଙ୍କୁ ତାଙ୍କ ବ୍ଲକରୁ ଅନ୍ୟତ୍ର ବଦଳି କରିବା ପାଇଁ ଜିଲ୍ଲାପାଳଙ୍କୁ ବାରମ୍ବାର ଗୋପନୀୟ ପତ୍ର ଲେଖିଲେ । ତାଙ୍କର ଟି.ଏ. ଦେଲେ ନାହିଁ । ଦରମା ଦେବାରେ ହଇରାଣ ହରକତ କଲେ ।

ପ୍ରସେନ୍‌ଜିତ୍ ଦ୍ୱୈତ ଶାସନ ମଧ୍ୟରେ କାମ କରୁଥିଲେ । କାମ କରିବେ ବିଡ଼ିଓଙ୍କ ନିୟନ୍ତ୍ରଣରେ । ଦରମା ଦେବେ, ସହକାରୀ ମୃତ୍ତିକା ସଂରକ୍ଷଣ ଅଧିକାରୀ । ବିଡ଼ିଓ ଦରମା ଡ୍ର କରିବାକୁ ଅନୁମୋଦନ କରିବାରେ ଡେରି କରନ୍ତି । ବ୍ଲକ୍ ଅଫିସ୍‌ର ସଂପୃକ୍ତ ସଂସ୍ଥାନ କିରାଣି ବି ପଇସା ନ ପାଇଲେ ପ୍ରସେନଜିତ୍‌ଙ୍କର କୌଣସି ଦରଖାସ୍ତ, ଆବେଦନ, ନିବେଦନ ପାଇଲେ ପେଶ୍ କରନ୍ତି ନାହିଁ । ଦରଖାସ୍ତ ବି ଚିରି ଦିଆଯାଏ । ଏପରି ବ୍ୟବହାରରେ ପ୍ରସେନ୍‌ଜିତ୍ ଅତିଷ୍ଠ ହୋଇ ପଡ଼ିଲେ । ସେ କଲେକ୍‌ଟରଙ୍କୁ ଦେଖା କରି ତାଙ୍କର ମୂଳ ପଦବୀକୁ ଫେରାଇ ଦେବାପାଇଁ ଅଳିକଲେ । ଅବଶ୍ୟ ସେଥିପାଇଁ ତାଙ୍କ ବାପାଙ୍କର ପରିଚିତ ଜଣେ ଆଇ.ଏ.ଏସ୍. ଅଫିସରଙ୍କ ସହାୟତା ନେବାକୁ ପଡ଼ିଥିଲା । ସେହି ଅଫିସର୍ କଲେକ୍ଟର୍‌ଙ୍କୁ ଫୋନ୍ କରି ପ୍ରସେନଜିତ୍ ପ୍ରତି ଅନୁକମ୍ପା ପ୍ରଦର୍ଶନ କରିବାକୁ କହିବାରୁ ପ୍ରସେନ୍‌ଜିତ୍‌ଙ୍କର ଭିଜିପୁଟ୍ ସହକାରୀ ମୃତ୍ତିକା ସଂରକ୍ଷଣ ଅଧିକାରୀଙ୍କ ଅଧୀନକୁ ବଦଳି ହେଲା ।

ଦୁଷ୍ମନ୍ତପୁର ବ୍ଲକ୍‌ରେ ୱାଟର୍ ସେଡ୍ ସ୍କିମ୍‌ରେ ଅବସ୍ଥାପିତ ହୋଇଥିବା ସମୟରେ ଟି.ଏ. ଏବଂ ବିଡ଼ିଓ ବନ୍ଦ କରିଥିବା ଦରମା ଡ୍ର କରି ଦେବା ପାଇଁ ପ୍ରସେନ୍‌ଜିତ୍ ଲେଖିକରି ଦେବାରୁ ଅଫିସ୍‌ର ବଡ଼ବାବୁ କହିଲେ – ଆପଣ ଲେଖି ଜାଣନ୍ତି ଓ ଫାଙ୍କି ଜାଣନ୍ତି । କରେଣ୍ଟ୍ କାମ ତ କରିବାକୁ ବେଳ ନାହିଁ । ଆପଣଙ୍କ ବକେୟା ପ୍ରାପ୍ୟ କଥା ଦେଖିବାକୁ କାହାର ବେଳ ଅଛି ? ଏ କଥା ଶୁଣିଲାବେଳେ ପ୍ରସେନ୍‌ଜିତ୍ ମନେ ପକାନ୍ତି, ବାପା ତାଙ୍କର ବିଡ଼ିଓ ଥିଲାବେଳେ କିପରି ସବୁ ଷ୍ଟାଫ୍‌ଙ୍କୁ ଏକ ନିର୍ଦ୍ଦିଷ୍ଟ ମାସ ପର୍ଯ୍ୟନ୍ତ ଟି.ଏ., ଘର ଭଡ଼ା ଦେଇ ଆସୁଥିଲେ । ଏବର ଅଫିସର୍‌ମାନେ ଅଫିସ୍ ବଡ଼ବାବୁ ଓ କିରାଣିମାନଙ୍କ ହାତରେ ସତେ ଯେମିତି ସଖୀ କଣ୍ଢେଇ । ଯାହା ପାଉଥିବ, ଅଣ୍ଟିରେ ବାନ୍ଧୁଥିବ । ଯାହା ରହିଲା, ତାହା ଗଲା, ସବୁଦିନ ପାଇଁ ଗଲା । ଏ ହୋଇଛି ଯୁଗଧର୍ମ; କର୍ମ ସଂସ୍କୃତି ।

ସମସ୍ତେ ନିଜ କଥା ବୁଝୁଛନ୍ତି । ଅନ୍ୟର ନ୍ୟାୟୋଚିତ ପ୍ରାପ୍ୟ ଦେବାକୁ ଭୁଲି ଯାଉଛନ୍ତି । ପ୍ରସେନ୍‌ଜିତ୍ ଦେଖିଲେ, ତେଲିଆ ମୁଣ୍ଡରେ ତେଲ । କୋରାପୁଟର ଗରିବ ଆଦିବାସୀଙ୍କ କଥା ପଚାରେ କିଏ ? ପରଜା ସାହି, ଶୁଣ୍ଡି ସାହି, ସବର୍ଣ୍ଣ ସାହି ବାରି ହୋଇଯିବ । ଯେଉଁ ପରଜା, କି କନ୍ଧ ପଡ଼ାରେ ଗିର୍ଜାଘର ଅଛି, ସେ ସାହିଗୁଡ଼ିକ ଆଧୁନିକତାର ସ୍ପର୍ଶରେ ଉଜ୍ଜଳ । ହେଲେ, ଧର୍ମାନ୍ତରିତ ପରଜାମାନେ ସେମାନଙ୍କର ପାରମ୍ପରିକ, ସରଳତା ଓ ନିଷ୍କପଟତା ହରେଇ ବସିଲେଣି, ଠକି ଶିଖିଲେଣି, ମିଛ କହିଲେଣି ।

କନ୍ଧ ରାଜାଙ୍କୁ ପାଣ ମନ୍ତ୍ରୀ । ଆଦିବାସୀ ସବର୍ଣ୍ଣ ସ୍ୱଚ୍ଛଳ ବର୍ଗଙ୍କ ମଧ୍ୟରେ ମଧ୍ୟସ୍ଥି ଭାବେ କାମ କରନ୍ତି ଦଳିତ ଶ୍ରେଣୀଭୁକ୍ତ ଡମ୍ବମାନେ । ଅର୍ଥନୈତିକ ବୈଷମ୍ୟ ଭିତରେ ଅବିଭକ୍ତ କୋରାପୁଟ ଉବୁଟୁବୁ ଯୁଗଯୁଗରୁ । ଏହି ବୈଷମ୍ୟ ପାଚରି ଭାଙ୍ଗି ସାମ୍ୟମୈତ୍ରୀର ଆଲୋକ ବିଛେଇବା ପାଇଁ କେବିକେ ସ୍କିମ୍ କାର୍ଯ୍ୟକାରୀ ହେଉଛି । ସେଥିରେ ମୃତ୍ତିକା ସଂରକ୍ଷଣ, କୃଷି, ଫଳଚାଷ, ବନୀକରଣ, କପାଚାଷ ଉପରେ ଜୋର୍ ଦିଆଯାଉଛି । ସେହି ସ୍କିମ୍‌କୁ କାର୍ଯ୍ୟକାରୀ କରିବା ପାଇଁ ପ୍ରସେନ୍‌ଜିତ୍‌ଙ୍କ ପରି ନବାଗତ କୃଷି ସ୍ନାତକ ଓ ସ୍ନାତକୋତ୍ତର ଯୁବକୃଷି ବିଜ୍ଞାନୀମାନଙ୍କର ଅବସ୍ଥାପନ ଅବିଭକ୍ତ କୋରାପୁଟରେ ।

ହେଲେ କାମ କରିବାର ପରିବେଶ କାହିଁ ? କୃଷି କ୍ଷେତ୍ର କର୍ମଚାରୀ ଓ ଅଧିକାରୀଙ୍କର ରହିବା ପାଇଁ, ଅଫିସ୍ କରିବା ପାଇଁ ଅନେକ ସ୍ଥଳରେ ସରକାରୀ ଘର ନାହିଁ । ଯାହା ବା ଆଗରୁଥିଲା ସବୁ ଭାଙ୍ଗିରୁଜି ଗଲାଣି । ମରାମତି ପାଇଁ ଅର୍ଥ କାହିଁ ?

ଭୁବନେଶ୍ୱର ଓ ଚିପିଲିମାରେ କୃଷି ମହାବିଦ୍ୟାଳୟରେ ପାଠ ପଢ଼ିଥିବା ସ୍ନାତକ ଓ ସ୍ନାତକୋତ୍ତରମାନେ ଏପରି ବଣ ଜଙ୍ଗଲ ମୁଲକରେ କିପରି ରହିବେ ? କିପରି କୃଷିର ଉନ୍ନତି କରିବେ ? ନାଁ, ଆଦିବାସୀମାନେ ତାଙ୍କ କଥା ବୁଝନ୍ତି, ନା ସେମାନେ ଆଦିବାସୀମାନଙ୍କର ? ଗାଁକୁ ପଶିଗଲେ ପ୍ରସେନ୍‌ଜିତ୍ ଅନୁଭବ କରନ୍ତି, ମରଦ, ତିର୍ଲା, ପିଲା, ବୁଢ଼ା- ଆଦିବାସୀଟିଏ ଭେଟିଲେ, ତା ଆଖିରେ ଭୟ ସାଙ୍ଗକୁ ଭୋକିଲା ଭୋକିଲା ଭାବ । କିଛି ପଚାରିଲେ, ଅଧା କହିବେ, ଅଧା ଢୋକିଦେବେ । କେତେ ଅଭାବରେ ଏମାନେ ଅଛନ୍ତି । କୋରାପୁଟ ପ୍ରକୃତିରେ ପ୍ରାଣ ପ୍ରାଚୁର୍ଯ୍ୟର ଅଭାବ ନାହିଁ । ହେଲେ ମଣିଷ ମନରେ ଭୟ, ଶଙ୍କା, ଅବିଶ୍ୱାସ, ସଂଶୟ ସବୁ ଏକାବେଳକେ ବସା ବାନ୍ଧି ରହିଛି । ଆଜି ନୁହେଁ । ଯୁଗଯୁଗରୁ । ହଜାର ହଜାର ବର୍ଷରୁ । ପ୍ରସେନ୍‌ଜିତ୍ ବିଷାଦରେ ଉଦାସ ହୋଇ ପଡ଼ନ୍ତି ।

ଆମ ସରକାରୀ କଳ ଚଳଉଥିବା ମଣିଷମାନଙ୍କର ଦୂରଦୃଷ୍ଟି ଏପରି ଯେ ମାତ୍ର ପାଞ୍ଚ ବର୍ଷ ମଧ୍ୟରେ ମୃତ୍ତିକା ସଂରକ୍ଷଣର କେନ୍ଦ୍ର ସରକାରଙ୍କଠୁ ସ୍ୱତନ୍ତ୍ର ଅନୁଦାନ ପ୍ରାପ୍ତ ଯୋଜନା ଓ ପରିକଳ୍ପନାଗୁଡ଼ିକ ବନ୍ଦ ହୋଇଗଲା । ଫଳରେ କନିଷ୍ଠ ମୃତ୍ତିକା ସଂରକ୍ଷଣ ଅଧିକାରୀମାନଙ୍କ ପାଇଁ କାମ ନାହିଁ କି ଦରମା ନାହିଁ । ପ୍ରସେନ୍‌ଜିତ୍‌ଙ୍କ ପରି ପ୍ରାୟ ଦୁଇଶହ ଯୁବ କୃଷି ବିଜ୍ଞାନୀ ମୃତ୍ତିକା ସଂରକ୍ଷଣ ନିର୍ଦ୍ଦେଶାଳୟରେ ଉଦ୍‌ବୃତ୍ତ ହୋଇଗଲେ । ସରକାର ସେମାନଙ୍କ ମଧ୍ୟରୁ କେତେକଙ୍କୁ କୃଷି ନିର୍ଦ୍ଦେଶାଳୟ ଓ ଉଦ୍ୟାନ ନିର୍ଦ୍ଦେଶାଳୟ ଅଧୀନରେ ଅବସ୍ଥାପିତ କଲେ । ପ୍ରସେନ୍‌ଜିତ୍ କୃଷି ନିର୍ଦ୍ଦେଶାଳୟରେ ଅବସ୍ଥାପିତ ହୋଇ ସେଇ ଜିଲା ସାକିରିଗୁମାରେ କନିଷ୍ଠ କୃଷି ଅଧିକାରୀ ଭାବେ ଯୋଗ ଦେଲେ । ଯାତାୟାତ ଦୃଷ୍ଟିରୁ ସାକିରିଗୁମା ଖୁବ୍ ଭଲ । ପୂର୍ବେ କାମ କରିଥିବା ଗୋବିନ୍ଦପାଟଣା, ମାଲକାନ୍‌ଗିରି ଓ ଦୁଷ୍ମନ୍ତପୁର ତୁଳନାରେ ସାକିରିଗୁମା ଅବସ୍ଥାନ ପ୍ରସେନ୍‌ଜିତ୍‌ଙ୍କ ପାଇଁ ଅନୁକୂଳ ଥିଲା । କେତେ ଦିନ ଖୁବ୍ ଭଲ ଚାଲିଲା ।

ମାତ୍ର ସବୁଦିନ ସମାନ ଯାଏ ନାହିଁ । ନୂଆ କ୍ରମେ ପୁରୁଣା ହୁଏ । ବାସି ତରକାରୀର ସୁଆଦ କେତେ ? ପ୍ରସେନ୍‌ଜିତ୍‌ଙ୍କ ଜୀବନ ଦର୍ଶନ ଓ କର୍ମଧାରା ତାଙ୍କୁ ସବୁବେଳେ ଅଡୁଆରେ ପକାଏ । ସେ ବହୁ ଭାବରେ ଅସ୍ୱଷ୍ଟ ଓ ଅବୁଝା ତଳ କର୍ମଚାରୀ ଓ ଉପର ହାକିମଙ୍କ ନିକଟରେ । ଚାଲି ଚଳଣିରେ ସ୍ୱଳ୍ପଭାଷୀ, ନୀରବ ଓ ଅନ୍ତର୍ମୁଖୀ । ନିଜକୁ ସେ ଆଧୁନିକ ଅର୍ଥରେ ଖୋଲା ମନରେ ବୁଝାଇ ପାରନ୍ତି ନାହିଁ । ସମ୍ଭବତଃ ସେ ଯୁଗୋପଯୋଗୀ ନୁହନ୍ତି । ତାଙ୍କ ପାଇଁ ସବୁ କିଛି କାହିଁକି ବାସି ଆମ୍ବିଳା ହୋଇଯାଉଛି । ଏହା ହିଁ ପ୍ରସେନ୍‌ଜିତଙ୍କ ଲଲାଟ ଲିଖନ । ମାଆ ଗର୍ଭରୁ ସେ ଯାହାଧରି ଆସିଛନ୍ତି, ତାହା କିପରି ବଦଳିବ ବା ଅନ୍ୟଥା ହେବ ? କ୍ରମେ କ୍ରମେ ପ୍ରସେନ୍‌ଜିତ୍

ପୂର୍ବସ୍ଥାନମାନଙ୍କରେ ଯେଉଁ ଅଡୁଆ ଝୁଅରେ ଛନ୍ଦି ହୋଇଥିଲେ, ସେପରି ପରିସ୍ଥିତିର ପୁଣି ସମ୍ମୁଖୀନ ହେଲେ । ଇତିହାସର ସତେ ଯେପରି ପୁନରାବୃତ୍ତି ଘଟିଲା । ପ୍ରସେନ୍‌ଜିତ୍ ଅନୁଭବ କଲେ, ତାଙ୍କର ଅବସରପ୍ରାପ୍ତ ଅଭିଜ୍ଞ ପ୍ରଶାସନିକ ଅଧିକାରୀ ବାପାଙ୍କଠାରୁ ଯାହା ଶୁଣିଛନ୍ତି, ଯାହା ଦେଖିଛନ୍ତି ତାହା ଆଉ କାମ ଦେଉ ନାହିଁ । ମୂଲ୍ୟବୋଧ ଆଉ ନୈତିକତାର ସଂଜ୍ଞା ଏବର ପ୍ରଶାସନରେ ବଦଳି ଗଲାଣି । ବାପା ଟ୍ରେନିଂ ପାଉଥିବା ସମୟର ଦୁଇଟି ବହି 'ଏସେଜ୍ ଅନ୍ ଜେନେରାଲ୍ ଆଡ୍‌ମିନିଷ୍ଟ୍ରେସନ୍' ଓ 'ରେମିନିସେନ୍ସ ଅଫ୍ ଏ ପବ୍ଲିକ୍ ସର୍‌ଭାଣ୍ଟ' ପ୍ରସେନ୍‌ଜିତ୍ ବାରମ୍ବାର ପଢ଼ନ୍ତି । ସେଥିରେ ଥିବା ନିର୍ଦ୍ଦେଶକୁ କାମରେ ଲଗାଇବାକୁ ଚେଷ୍ଟା କରନ୍ତି । ମାତ୍ର ସବୁ କେମିତି ଏପଟ ସେପଟ ହୋଇଯାଏ । ପ୍ରସେନ୍‌ଜିତ୍ ଏକୁଟିଆ ଏକୁଟିଆ ଅନୁଭବ କରନ୍ତି । କ'ଣ ଗୋଟାଏ ସମସ୍ୟା ଉପୁଜିଲେ କି କୈଫତ୍ ତଲବ ହେଲେ, ବାପାଙ୍କୁ ଶୀଘ୍ର ଆସିବା ପାଇଁ ଡାକନ୍ତି । ବାପା ବି ପଞ୍ଚଷଠି, ସତୁରି ବର୍ଷ ବୟସରେ କେତେ ଦୌଡ଼ିବେ ?

କାମ କର ବା ନ କର, ମାସିକ ଦରମାରୁ ପାଞ୍ଚ ଦଶ ପ୍ରତିଶତ ଅଫିସ୍ ବଡ଼ବାବୁ କାଟି ରଖିବେ । ଥରେ ଦି'ଥର ଏପରି ଘଟିବାରୁ ପ୍ରସେନ୍‌ଜିତ୍ ସ୍ୱର ଉତ୍ତୋଳନ କଲେ । ଦରମାରୁ ଉପର ହାକିମମାନଙ୍କ ପୂଜା ପାଇଁ ହେଉ ବା ହାତ ଗୁଞ୍ଜା ପାଇଁ ହେଉ, ପର୍‌ସେଣ୍ଟେଜ୍ କାଟି ରଖିବା ବଦଳରେ ବରଂ କେବିବେ ଜିଲ୍ଲାରେ ଅବସ୍ଥାପିତ ଅଧିକାରୀ ଓ କର୍ମଚାରୀମାନଙ୍କୁ ସ୍ୱତନ୍ତ୍ର ଭତ୍ତା ମିଳିବା କଥା । ଅଫିସ୍ କରିବାକୁ ଘର ନାହିଁ, ପରିବାର ରଖିବାକୁ ସରକାରୀ କ୍ୱାର୍ଟର୍ ନାହିଁ, ଏତେ ଅସୁବିଧାରେ ଥାଇ ପୁଣି ଉପର ହାକିମଙ୍କୁ ଓ ଅଫିସ୍ ଗୁମାସ୍ତାଙ୍କୁ ବଟି ଦେବାକୁ ପଡ଼ିବ ? ଏ କିପରି କଥା ? ପ୍ରସେନ୍‌ଜିତ୍ ଏ କଥା ଅଫିସ୍‌ରେ ଯାଇ କହିଲେ ।

''ଆମେ ଆଦିବାସୀ ଅଧ୍ୟୁଷିତ ବଣ ପାହାଡ଼ ଅଞ୍ଚଳରେ ଚାକିରି କରିବୁ, ଚିକିତ୍ସା ସୁବିଧା ନାହିଁ, ବେମାର ପଡ଼ିଲେ ହାରି ଗୁହାରି କେହି ନାହିଁ, ଅଥଚ ଆମଠୁ ମାସିକ ବଟି ଆଦାୟ ହେଉଛି । ନଦେଲେ ହଇରାଣ ହରକତ କରୁଛନ୍ତି । ଦରମା ତ୍ର କରୁ ନାହାନ୍ତି । ଏ କି ପ୍ରକାର ମଧ୍ୟଯୁଗୀୟ, ମରହଟ୍ଟୀ ଶାସନ ?'' ପ୍ରସେନ୍‌ଜିତ୍ ପାଟିରେ ବାଟୁଲି ବାଜୁ ନାହିଁ । ''ଆରେ ଟୋକାଟା ଖଣ୍ଡେ ଅଛି । ଏହା ପାଇଁ କିଛି ମନ୍ତର ଯନ୍ତର କରିବାକୁ ହେବ'' - କହିଲେ ଅଫିସ୍ ବଡ଼ବାବୁ ।

ସେଇଠୁ ଆରମ୍ଭ ହେଲା ମସିଯୁଦ୍ଧ । ଅଜବ ମିଛ କଥାରେ ପ୍ରସେନ୍‌ଜିତ୍‌ଙ୍କୁ କୈଫତ୍ ପରେ କୈଫତ୍ ମଗାଗଲା । କୈଫତ୍ ପତ୍ର ପାଇବାମାତ୍ରେ ପ୍ରସେନ୍‌ଜିତ୍ ଫୋନ୍‌ରେ ବାପାଙ୍କୁ ଆସିବା ପାଇଁ ଡାକନ୍ତି । ପୁଅର କାକୁତି ଦେଖି ଅବସର ପ୍ରାପ୍ତ ବରିଷ୍ଠ ପ୍ରଶାସନିକ ଅଧିକାରୀ ବାପା ଦୌଡ଼ନ୍ତି ଟ୍ରେନ୍ ବା ବସ୍‌ରେ ।

ପହଞ୍ଚୁ ପହଞ୍ଚୁ ଆଗେ ଗୋଡ଼ ହାତ ନ ଧୋଇ କ'ଣ କୈଫତ୍ ମଗା ଯାଇଛି, ଏକା ନିଃଶ୍ୱାସକେ ଦେଖି ନିଅନ୍ତି । ପୁଅକୁ କାଗଜ ମାଗି ପ୍ରତ୍ୟେକ ପଏଣ୍ଟ ଉପରେ ଉତ୍ତର ଲେଖି ଦିଅନ୍ତି । ତା'ପରେ ନିତ୍ୟକର୍ମ ଓ ଭୋଜନ । ପ୍ରସେନ୍‌ଜିତ୍ ପଚାରନ୍ତି - ବାପା, ଏତେ ଶୀଘ୍ର ଉତ୍ତର ଲେଖିଦେଲ । ଏ ସ୍ତରକୁ ଆସିବା ପାଇଁ ମୋତେ କେତେ ବର୍ଷ ଲାଗିବ ? ଆରେ, ଏ ତ ୩୩/୩୫ ବର୍ଷର ସାଧନା । ତୋତେ ଅତି କମ୍‌ରେ ପନ୍ଦର କୋଡ଼ିଏ ବର୍ଷ ଲାଗିବ ଏ ସ୍ତରରେ ପହଞ୍ଚିବାକୁ । ପୁଅ ପୁଣି ପଚାରନ୍ତି - ବାପା, ଉଭୟ ଓଡ଼ିଆ, ଇଂଲିଶ୍‌ରେ ତୁମେ ଏତେ ଶୀଘ୍ର ଡ୍ରାଫ୍ଟ ଲେଖି ପାରୁଛ । ମୋର ଈର୍ଷା ହେଉଛି, ପୁଣି ଗର୍ବ ଆସୁଛି, ମୋ ବାପା ଏତେ ଚମତ୍କାର ଉତ୍ତର ଲେଖି ପାରୁଛନ୍ତି ।

କୈଫତ୍‌ର ଉତ୍ତର ପାଇ ଉପର ଅଧିକାରୀମାନେ ଆଶ୍ଚର୍ଯ୍ୟ ହୁଅନ୍ତି, ଜଣେ କନିଷ୍ଠ ଅଧିକାରୀ, ଯାହାର କୌଣସି ତାଲିମ ଅଭିଜ୍ଞତା ନାହିଁ, ୟୁନିଭରସିଟି ଶିକ୍ଷା ସମାପ୍ତ କରି ସିଧା ସଳଖ ଚାକରିରେ, ସେ କିପରି ଏପରି ଅକାଟ୍ୟ ଉତ୍ତର ଦେଇ ପାରୁଛି । ଏପରି ଭାଷା କିପରି ସେ ଲେଖୁଛି ? କ୍ରମେ ସମସ୍ତେ ଜାଣିବାକୁ ପାଇଲେ, ୟାଙ୍କର ବାପା ଜଣେ ଅବସରପ୍ରାପ୍ତ ଉଚ୍ଚ ପ୍ରଶାସନିକ ଅଧିକାରୀ । ସେ ପ୍ରତ୍ୟେକ କୈଫତ୍ ପତ୍ରର ଯଥାଯଥ ଉତ୍ତର ଲେଖି ଦେଉଛନ୍ତି ।

ଗୋଟାଏ ନିର୍ଦ୍ଦେଶ ଥାଏ, ଗ୍ରାମସେବକମାନେ କାର୍ଯ୍ୟକାରୀ ଦିବସରେ ଗ୍ରାମ ପଞ୍ଚାୟତ କାର୍ଯ୍ୟାଳୟରେ ପ୍ରତ୍ୟହ ଦିନ ୨ଟାରୁ ୫ଟା ପର୍ଯ୍ୟନ୍ତ ବସିବେ । ପ୍ରସେନ୍‌ଜିତ୍ ଆକସ୍ମିକ ପରିଦର୍ଶନ କରି ଉପର ଅଧିକାରୀଙ୍କୁ ଜଣାଇଲେ ଗ୍ରାମସେବକମାନେ ପଞ୍ଚାୟତ କାର୍ଯ୍ୟାଳୟରେ କାର୍ଯ୍ୟକାରୀ ଦିବସରେ ଅପରାହ୍ନ ୨ଟାରୁ ୫ଟା ପର୍ଯ୍ୟନ୍ତ ଉପସ୍ଥିତ ରହୁ ନାହାନ୍ତି ଚାଷୀମାନଙ୍କୁ ଚାଷ, ସାର ବ୍ୟବହାର ପ୍ରଭୃତି ବିଷୟରେ ପରାମର୍ଶ ଦେବା ପାଇଁ । ଏ ରିପୋର୍ଟ ପାଇ ଉପର ଅଫିସର୍ ସମସ୍ତ ଗ୍ରାମ ସେବକଙ୍କୁ ମତାଇଦେଲେ- ଯୁବକୃଷି ଅଫିସର୍ ସେମାନଙ୍କ ବିରୁଦ୍ଧରେ ଲେଖିଛନ୍ତି । ସେମାନେ ସମସ୍ତେ ସମ୍ମିଳିତ ଭାବେ ଅଭିଯୋଗ ପତ୍ର ଦିଅନ୍ତୁ- ପ୍ରସେନ୍‌ଜିତ୍ ମଧ୍ୟ ପଞ୍ଚାୟତ ପରିଦର୍ଶନ କରୁ ନାହାନ୍ତି । ଗ୍ରାମସେବକ ଓ କୃଷକମାନଙ୍କୁ ଉଚିତ ପରାମର୍ଶ ଦେବାକୁ ତାଲିମ ସମୟରେ ସଦରମହକୁମାରେ ଅନୁପସ୍ଥିତ ରହୁଛନ୍ତି ।

ପାଞ୍ଚ ତୁଣ୍ଡରେ ଛେଳି କୁକୁର । ତଥାପି ପ୍ରସେନ୍‌ଜିତ୍ ଲିଖିତ ଭାବରେ ଯୁକ୍ତି ଏବଂ ନଜିର ସହ ଜଣାଇଲେ । ଯେମିତି ହେଲେ ଫାନ୍ଦରେ ପକାଇବାକୁ ପଡ଼ିବ । ପ୍ରସେନ୍‌ଜିତ୍‌ଙ୍କ ବିରୁଦ୍ଧରେ ଉପର ହାକିମ ଗୋପନୀୟ ରିପୋର୍ଟ ବି କରିଦେଲେ ।

ମାଲ୍‌କାନ୍‌ଗିରି ବଦଳି ହେଉଥିଲା । ବାପାଙ୍କର ଜଣା ଶୁଣା ଜଣେ ଶିଶୁ ସାହିତ୍ୟିକ - ଜିଲ୍ଲା କୃଷି ଅଧିକାରୀ, ଉପକୃଷି ନିର୍ଦ୍ଦେଶଙ୍କୁ କହିଲେ - ସାର୍, ଏପରି କ'ଣ କରୁଛନ୍ତି ? ଗୁଣ୍‌ଗ୍ରାହୀ ସରଳ, ନିରୀହ ଯୁବକଟିଏ । ତା ବାପା ମୋ ସାହିତ୍ୟିକ ବନ୍ଧୁ । ତାକୁ କ'ଣ ପୁଣି ମାଲକାନ୍‌ଗିରି ବଦଳି କରୁଛନ୍ତି ? ସେ ଚଳି ପାରିବ ତ ? ସେ ତ ପୂର୍ବରୁ ସେଠାରେ ଥିଲା ।

ଉପର ହାକିମଙ୍କ ମନକୁ ପାଇଲା । ସେ ସାକିରିଗୁମାରୁ ଗମ୍ଭାରୀପୁଟକୁ ବଦଳିଗଲେ । ଅତି ଗୋପନୀୟ ଭାବେ କରାଗଲା, ଯେପରି ପ୍ରସେନ୍‌ଜିତ୍ କିମ୍ବା ତାଙ୍କର ବାପା ଉପର ସ୍ତରକୁ ଧରି ବଦଳି କ୍ୟାନ୍‌ସେଲ୍ କରି ନ ପାରିବେ । ତାଙ୍କର 'ଗୁପ୍ତ ଚରିତ୍ର ପଞ୍ଜିକା' ବି ନଷ୍ଟ କରି ଦିଆଗଲା । ଅବଶ୍ୟ ସେ ତା'ର ସମୁଚିତ ଉତ୍ତର ଦେଇଥିଲେ । ସମ୍ଭବତଃ ତାହା କର୍ତ୍ତୃପକ୍ଷଙ୍କ ଦ୍ୱାରା ଗୃହୀତ ହୋଇଥିଲା । କାରଣ ତାଙ୍କ ଉତ୍ତରକୁ ପ୍ରତ୍ୟାଖ୍ୟାନ କରି କୌଣସି ପତ୍ର ତାଙ୍କର ହସ୍ତଗତ ହୋଇ ନଥିଲା । 'ଗୁପ୍ତ ଚରିତ୍ର ପତ୍ରିକା'ରେ ଲିପିବଦ୍ଧ ଥିଲା, ପ୍ରତି କଥାରେ ବାପାଙ୍କ ଉପରେ ନିର୍ଭର କରୁଥିଲେ ପ୍ରସେନ୍‌ଜିତ୍ । ଏ ପୁଣି ଗୋଟାଏ ଅପରାଧ, ପୁଅ ବାପାଠାରୁ ପରାମର୍ଶ ନେବାଟା !

ସାଧାରଣ କାରଣରେ ତାଙ୍କର ତିଉଟି ପିରିୟଡ଼ର ଦରମା ବନ୍ଦ କରାଗଲା । ଅତିଷ୍ଠ ହୋଇ ପ୍ରସେନ୍‌ଜିତ୍ ବାପାଙ୍କୁ କହିଲେ - ବାପା, ମୁଁ ମରିବି ପଛେ ଏପରି ଅମଣିଷ ନିଷ୍ଠୁର ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ପାଖେ କାମ କରିବି ନାହିଁ । ମୁଁ ଲମ୍ବା ଛୁଟିରେ ଚାଲିଯିବି । ବାପା ବହୁତ ବୁଝାଇଲେ । ସହକାରୀ କୃଷି ଅଧିକାରୀ, ଦୁର୍ଗାପୁର ବି ବହୁତ ବୁଝାଇଲେ । କହିଲେ ମୋ ସାଙ୍ଗରେ ଆସ - ମୁଁ ଅଫିସରଙ୍କ ନିକଟକୁ ନେଇ ମିଳାମିଶା କରିଦେବି । ତୁମେ ଖାଲି କହିବ - ସାର୍, ଆଇ ଆମ୍ ସରି... । ଏତିକି ମାତ୍ର । ଏତିକି କରିବାକୁ ପ୍ରସେନ୍‌ଜିତ୍ ରାଜିହେଲେ ନାହିଁ । ସ୍ୱାସ୍ଥ୍ୟଗତ କାରଣ ଦର୍ଶାଇ ଛୁଟିରେ ଚାଲି ଆସିଲେ ବାପାଙ୍କ ସହ । ଦୁଇମାସର ଡିଉଟି ପିରିୟଡ଼ ଦରମା ଆଣିବାକୁ ବି ଗୋବିନ୍ଦ ପାଟଣା ଗଲେ ନାହିଁ । ଡାକରେ ବ୍ୟାଙ୍କ୍ ଡ୍ରାଫ୍ଟରେ ପଠାଇ ଦେବାକୁ ଲେଖି ସାକିରିଗୁମା ଛାଡ଼ି ବାପାଙ୍କ ସହ ଭୁବନେଶ୍ୱର ଚାଲି ଆସିଲେ ।

ରହୁ ରହୁ ସାତ ମାସ ଛୁଟିରେ ରହିଲେ । ମନ୍ତ୍ରୀ ଓ ନିର୍ଦ୍ଦେଶକଙ୍କୁ ଏପଟକୁ ବଦଳି କରି ଆଣିବା ପାଇଁ ବହୁ ଅନୁନୟ ବିନୟ ଭାବେ ନିବେଦନପତ୍ର ସମର୍ପଣ କଲେ । କିଛି ଦିନ ବଡ଼ ଭାଇଙ୍କ ପାଖେ ରହିଲେ । ଭୁବନେଶ୍ୱର ହେଉ, ବା ଭଞ୍ଜ

ବିହାର ହେଉ, ଠିକ୍ ପାଞ୍ଚଟାରେ ଉଠି ପ୍ରାତଃ ଭ୍ରମଣ କରନ୍ତି । ବେଳେବେଳେ ବଡ଼ଭାଇ, ବାପା ଓ ପ୍ରସେନ୍‌ଜିତ୍ ତିନିଜଣ ଯାକ ପ୍ରାତଃ ଭ୍ରମଣରେ ବାହାରନ୍ତି । ଡିସେମ୍ବର, ଜାନୁଆରୀର ପାହାନ୍ତା ପ୍ରହରର ଶୀତ ପ୍ରକୋପ ଲାଘବ କରିବା ପାଇଁ ପ୍ରାତଃ ଭ୍ରମଣ ରାସ୍ତାରେ ପଡୁଥିବା ଷ୍ଟଲ୍‌ରୁ ଚା କି କଫି କପେ କପେ ସେବନ କରନ୍ତି । ଭୁବନେଶ୍ୱରରେ ମଧ୍ୟ ସେୟା । ସାତ ମାସ ଚେଷ୍ଟା କରି ମଧ୍ୟ ବଦଳି ହେଲା ନାହିଁ । ପ୍ରଥମେ ମୃତ୍ତିକା ସଂରକ୍ଷଣରେ ଥିଲେ, ପରେ କୃଷି ନିର୍ଦ୍ଦେଶାଳୟ ଅଧୀନକୁ ଆସିଲେ । ସର୍ବମୋଟ୍ ୪/୫ ବର୍ଷ କୋରାପୁଟରେ ଚାକିରି ହେଲେ ମଧ୍ୟ କୃଷି ନିର୍ଦ୍ଦେଶାଳୟ ଅଧୀନରେ ୩ ବର୍ଷରୁ କମ୍ ସମୟ ପୋଷ୍ଟିଂ ହୋଇଥିବାରୁ ନିର୍ଦ୍ଦେଶକ ବଦଳି ପାଇଁ ରାଜି ହେଲେ ନାହିଁ । ଅଗତ୍ୟା ଅନନ୍ୟୋପାୟ ହୋଇ କୁମ୍ଭାରୀପୁଟରେ ଯୋଗଦେଲେ । ସେଠାରେ ଅଫିସ୍ ଗୃହ ନାହିଁ । ଭଡ଼ାଘର ମଧ୍ୟ ରହିବାକୁ ମିଳିଲା ନାହିଁ । କେତେଦିନ ରାୟପୁରରୁ ଯିବା ଆସିବା କରି କାମ କଲେ । ପରେ ଗୋବିନ୍ଦ ପାଟଣାରେ ରହି ମଝିରେ ମଝିରେ ଗମ୍ଭାରିପୁଟ ଆସି କାମ କଲେ । ତାଙ୍କୁ କୌଣସି ସ୍କିମ୍ ଓ ଫିଲ୍ଡ କାମ ଦିଆଗଲା ନାହିଁ । ଅନ୍ୟ ସମସ୍କନ୍ଧ ଅଧିକାରୀମାନେ ସେ କାମ କରୁଥିଲେ । ସେମାନେ ତାଙ୍କ ପାଇଁ କାମ କରୁ ଥିବାରୁ ତାଙ୍କ ମାସିକ ଦରମାରୁ ଅଫିସ୍ କିଛି ଅଂଶ କାଟି ରଖେ । ଏଥିରେ ପ୍ରସେନ୍‌ଜିତ୍ ବ୍ୟଥିତ ହେଲେ ମଧ୍ୟ ନାଚାର । କାମ କରିବା ପାଇଁ କେହି ଉତ୍ସାହ ଦେବାର ନାହିଁ । କେବଳ ବିଭିନ୍ନ ବାଟରେ ଅର୍ଥ ଶୋଷଣର ଶରବ୍ୟ ହେଲେ ପ୍ରସେନ୍‌ଜିତ୍ ।

ଆଗେ ମିଟିଂ ଯାଉଥିଲେ । ଶେଷକୁ ମାସିକ ବୈଠକଗୁଡ଼ିକୁ ଯିବାକୁ ଇଚ୍ଛା କଲେ ନାହିଁ । କାରଣ ଏଥିପାଇଁ କୌଣସି ସ୍ତରରୁ ପ୍ରୋତ୍ସାହନ ମିଳିଲା ନାହିଁ । ଅନ୍ୟମାନେ କାମ କରିବେ, ହିସାବ କାଗଜପତ୍ର ନେଇ ମିଟିଂରେ ଆଲୋଚନା କରିବେ, ଉତ୍ତର ଦେବେ । ସେ କ'ଣ କରିବେ ? ହଂସ ମଧ୍ୟେ ବକ ଯଥା ? କ୍ରମେ କ୍ରମେ ମନ ଦୁର୍ବଳ ହୋଇଗଲା । ହୀନମନ୍ୟତା ତାଙ୍କୁ ଘେରି ବସିଲା । ଏହା ମଧ୍ୟରେ ସାତୋଟି ବାର୍ଷିକ ବର୍ଦ୍ଧିତ ଦରମା ସାଙ୍କସନ୍ ହେବାକୁ ନାହିଁ । ଜାନୁଆରୀ ପହିଲା, ୧୯୯୬ରୁ ବର୍ଦ୍ଧିତ ହାରରେ ଦରମା ମିଳିବାକୁ ନାହିଁ । ଏକାଧିକ ଜାଗାକୁ ବଦଳି ହେବାରୁ ଏହି ବକେୟା କାମ ବିଭିନ୍ନ ଅଫିସ୍‌ରେ ହେବା ପାଇଁ ପଡ଼ି ରହିଛି । ପୁରୁଣା କାଗଜ ଆଡ଼େଇବାକୁ କାହାର ବା ସମୟ ଅଛି । ଇଚ୍ଛା ନାହିଁ କି ଧୈର୍ଯ୍ୟ ନାହିଁ । ଛୁଟି ଦରମା ସହ କୋଡ଼ିଏ ମାସ ଦରମା ମିଳିଲା ନାହିଁ, ଯାହା ସଂଶୋଧିତ ହାରରେ ଜାନୁଆରୀ ପହିଲା ୧୯୯୬ରୁ ମିଳିବା କଥା; ଅଥଚ ପ୍ରସେନ୍‌ଜିତ୍ ରୀକ୍ତ ହାତରେ ଉଭା ହୋଇଛନ୍ତି ୨୦୦୪ ଅପ୍ରେଲ୍-ମେ ମାସରେ । ଅବସ୍ଥାନ ଗୋବିନ୍ଦପାଟଣାରେ ।

ପ୍ରତିମାସରେ ଦରମାରୁ ମୋଟା ଧରଣର କଟା ଯାଉଥାଏ, ଅନ୍ୟମାନଙ୍କୁ ଦେବା ପାଇଁ, ଯେଉଁମାନେ ତାଙ୍କ ତରଫରୁ ତାଙ୍କ ସ୍କିମ୍‌ଗୁଡ଼ିକ କାର୍ଯ୍ୟକାରୀ କରୁଛନ୍ତି । ପ୍ରସେନ୍‌ଜିତ୍ ପଚାରନ୍ତି ନିଜକୁ ମନେ ମନେ - କାହିଁ ମୁଁ ତ ମୋ କାମ କରିବାକୁ କେବେ ମନା କରି ନାହିଁ ? ମୋତେ ଏପରି ତ୍ରିଶଙ୍କୁ ଅବସ୍ଥାରେ କାହିଁକି ରଖା ଯାଇଛି ? ଭୟ ଓ ସଂକୋଚରେ ଏତକ ମଧ୍ୟ ଉପର ହାକିମଙ୍କୁ ପଚାରି ପାରନ୍ତି ନାହିଁ । ହାକିମ୍‌ଙ୍କୁ ତାଙ୍କ ଦୁଃଖ ବୁଝିବାକୁ ବେଳ ନଥାଏ । ଯାହା ନିର୍ଦ୍ଦେଶ, ସବୁ ବଡ଼ବାବୁଙ୍କ ଜରିଆରେ ।

ପ୍ରସେନ୍‌ଜିତ୍ ଭାବନ୍ତି, ତାଙ୍କ ଭାଗ୍ୟରେ କାହିଁକି ଏପରି ଘଟିଲା ? କାହିଁକି ତାଙ୍କର କ୍ୟାରିଅର୍ ଏପରି କ୍ଷତ ବିକ୍ଷତ, ଛିନ୍‌ଭିନ୍ ହୋଇଗଲା ? ସମସ୍ତେ ତାଙ୍କ ସାଙ୍ଗସାଥୀ ଭଲରେ ଚଳୁଛନ୍ତି, ତାଙ୍କର ଅବସ୍ଥା କାହିଁକି ଏପରି ? କିଏ ଏଥିପାଇଁ ଦାୟୀ ??

ଥରେ ଛୁଟିରେ ଆସି ବାପାଙ୍କୁ କହିଲେ - ବାପା, ମୋ ଦରମାରୁ ବଡ଼ବାବୁ ପାଞ୍ଚ ହଜାର ଟଙ୍କା ରଖିନେଲେ । କହିଲେ - ଆପଣ କାଲି ଆସିଥିଲେ, ପୂରା ନେଇ ଯାଇଥାନ୍ତେ । ଆଜି, ଅଫିସର୍ କହିଲେ - ପ୍ରସେନ୍‌ଜିତ୍‌ର ଦରମାରୁ ପାଞ୍ଚ ହଜାର ଟଙ୍କା ରଖିଦେବ । ତା'ର ଗୋବିନ୍ଦ ପାଟଣାକୁ ବଦଳି ପାଇଁ ଉପର ମହଲରେ ଖର୍ଚ୍ଚ ଦେବାକୁ ପଡ଼ିବ । ବାପା, ମୁଁ ଏହା ବଡ଼ବାବୁଙ୍କଠୁ ଶୁଣି ନୀରବ ରହିଲି । ବାପା କହିଲେ - ହଉ, ଆଜିକାଲି ତ ଏପରି ଚାଲିଛି । ତୁ ଗୋବିନ୍ଦପାଟଣା ପ୍ରପର୍‌କୁ ବଦଳି ହୋଇ ଆ । ପାଞ୍ଚହଜାର ଟଙ୍କା ତ । କେତେ ହଜାର ଟଙ୍କାର ବକେୟା ପ୍ରାପ୍ୟ ସରକାରରେ ପଡ଼ି ରହିଛି । ସେଇ ଅଫିସ୍ ଷ୍ଟାଫ୍ ତ ବିଲ୍ କରିବେ । ବର୍ତ୍ତମାନ ସେମାନେ ବିଗିଡ଼ିଗଲେ ସବୁ ଅସୁବିଧା ହୋଇଯିବ । କିଛି ଭାବନା... ।

ପ୍ରସେନ୍‌ଜିତ ରହୁଥିବା ପାଖ କଲେଜର ଜଣେ ଅଧ୍ୟାପିକା ଅବିବାହିତା ଥିଲେ । ପ୍ରସେନ୍‌ଜିତ୍ ବି ତାଙ୍କର ଅବ୍ୟବସ୍ଥିତ ଚାକରି ଜୀବନ ଯୋଗୁଁ ବିବାହ ପ୍ରତି ଦୃଷ୍ଟି ଦେଇ ନଥିଲେ । ମାତ୍ର ଘରକୁ ଆସିଲେ, ବୋଉକୁ କହନ୍ତି - ବୋଉ, ମୋ ସାଙ୍ଗ ଅନୁପର ବାହାଘର ହୋଇ ତା'ର ପୁଅଟିଏ ହୋଇଛି । ଏବେ ମାଷ୍ଟର କ୍ୟାଣ୍ଟିନ୍ ପାଖେ ଦେଖା ହେଲା ଯେ କହୁଥିଲା । ବୋଉଙ୍କ ମନ ବିବଶ ହୋଇପଡ଼େ । ପୁଅ ଉପଲକ୍ଷ ଦେଉଛି, ତା'ର ବିଭାଘର ହୋଇଥିଲେ, ସେ ବି ପୁଅଝିଅର ବାପା ହୁଅନ୍ତାଣି । ବୟସ ଆସି ୩୩/୩୪ ହେଲାଣି । ପୁଣି କୋଡ଼ପୋଛା ପୁଅ । ୨୩ ବର୍ଷ ବୟସରେ ଚାକିରି ଆରମ୍ଭ କରିଥିଲା । ୨୪/୨୫ରେ ବାହା କରିଥିଲେ, ସେ ନାତି ନାତୁଣୀ ଦେଖେନ୍ତେଣି । ବୋଉଙ୍କର ମନ ଦୁଃଖ ଓ ଅବସାଦରେ କୁହୁଳି ଉଠେ ।

ପ୍ରସେନ୍‌ଜିତ୍‌ଙ୍କ ଅଧ୍ୟାପିକାଙ୍କ ସହ ବିବାହ ପ୍ରସ୍ତାବ ପଡ଼ିଲା । ବୟସ ବ୍ୟବଧାନ ମାତ୍ର ଦୁଇବର୍ଷ । ଭଗବାନ୍ ରାମଙ୍କଠାରୁ ତ ସୀତା ଠାକୁରାଣୀ ଚାରିମାସ ବଡ଼ଥିଲେ ବୋଲି ଆଇଙ୍କଠାରୁ ପ୍ରସେନ୍‌ଜିତ୍ ଶୁଣିଥିଲେ । ଶିକ୍ଷା ଅଛି । ଅଧ୍ୟାପିକା । ପିଲାଦିନୁ ପିତୃଛେଉଣ୍ଡ । ନିଜ ଗୋଡ଼ରେ ଠିଆ ହୋଇ ଫାଷ୍ଟ କ୍ଲାସ୍‌ରେ ଏମ୍.ଏ. ପାସ୍ ପରେ ଏଠାରେ କଲେଜରେ ୮ ବର୍ଷ ହେଲା ମନସ୍ତତ୍ୱ ବିଷୟରେ ଅଧ୍ୟାପନା କରନ୍ତି । ଯେତେବେଳେ ବଦଳି ହୋଇଯିବା ସମ୍ଭବପର ହେଉ ନାହିଁ, ଏଇଠାରେ ବିବାହ କରି କିଛି ବର୍ଷ କଟାଇ ତାପରେ ଚେଷ୍ଟା କରି ଘର ପାଖକୁ ବଦଳି ହୋଇଗଲେ ଚଳିବ ।

ଏହି ବିଚାର ପ୍ରସେନ୍‌ଜିତ୍‌ଙ୍କ ବାପା ବୋଉଙ୍କ ମନକୁ ପାଇଲା । ବାପା ନାହିଁ । ଦୁଃଖୀ ଝିଅଟିଏ । ପ୍ରାଇଭେଟ୍ କଲେଜରେ ଡୋନେସନ୍ ଦେଇ କେତେଟା ଟଙ୍କାରେ ଅଧ୍ୟାପିକା । ନମନୀୟ ହେବ, ବୋହୂ ପଣିଆ କରିବ । ସ୍ୱାମୀ, ଶାଶୁ ଶଶୁର ପ୍ରତି ଅନୁଗତ ରହିବ । ତଥାପି ଆଶଙ୍କା, ପ୍ରସେନ୍‌ଜିତ୍ କୃଷି ସ୍ନାତକ ଥିଲାବେଳେ ଅଧ୍ୟାପିକା ସ୍ନାତକୋତ୍ତର । ଏହି ବ୍ୟବଧାନ କମ୍ପ୍ଲେକ୍ସ' ସୃଷ୍ଟି କରିବ ନି ତ ? ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କ ମନରେ ଏଇ ପ୍ରଶ୍ନବାଚୀ ଉଙ୍କି ମାରିଲା । କାରଣ ଆଗରୁ ବଡ଼ବୋହୂ ଏମ୍.ଏ., ଏମ୍.ଇଡି., ଦ୍ୱିତୀୟ ବୋହୂ ନୃତତ୍ତ୍ୱରେ ଏମ୍.ଏ. ଏବଂ ବଡ଼ଭାଇ ଆଇ.ପି.ଏସ୍. ଅଫିସର୍ । ଏଭଳି କମ୍ବିନେସନ ପରିବାରରେ ମଝିରେ ମଝିରେ ମୃଦୁ ଝଡ଼ ସୃଷ୍ଟି କରିଛି । ବୁଝାବଣା ଠିକ୍ ରହି ନାହିଁ । ଏଠାରେ ସେପରି ଘଟିବ ନାହିଁ ତ ? କନ୍ୟା ପକ୍ଷରେ ଭଦ୍ରବ୍ୟକ୍ତିମାନେ କହିଲେ - ଝିଅ ଏମ୍.ଏ. କଲେ କ'ଣ ହେଲା, ବର ତ ଟେକ୍ନିକାଲ୍ ଗ୍ରାଜୁଏଟ୍ । ପୁଣି ପେନ୍‌ସନେବଲ୍ ସର୍ଭିସ୍ ହୋଲ୍‌ଡର୍ । ଅସୁବିଧା କିଛି ହେବ ନାହିଁ ।

ପ୍ରସେନ୍‌ଜିତ୍ ଦୀର୍ଘ ଏକ ଦଶନ୍ଧିର ଚାକିରି ଜୀବନରେ ଧକ୍କା ଖାଇ ଖାଇ କ୍ଳାନ୍ତ ହୋଇ ପଡ଼ିଥିଲେ । ଟିକିଏ ଆଶ୍ୱାସନା, ଟିକିଏ ମିଠା କଥା, ଯାହାକୁ କହନ୍ତି ସରଳ ଅର୍ଥରେ - 'ପ୍ରେମ' ଚାହୁଁଥିଲେ । ତେଣୁ ପ୍ରସ୍ତାବରେ ରାଜିହୋଇଗଲେ ।

ଅବିଭକ୍ତ କୋରାପୁଟରେ ଦୀର୍ଘ ରହଣି ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ପ୍ରସେନ୍‌ଜିତ୍‌ଙ୍କୁ ଶାରୀରିକ ଓ ମାନସିକ ଦୃଷ୍ଟିରୁ ଦୁର୍ବଳ କରି ଦେଇଥିଲା । ପାଠରେ କିନ୍ତୁ ସେ ପୂର୍ବବତ୍ ଦୃଢ଼ଥିଲେ । ଯେଉଁଦିନ ଭାବୀ ବର କନ୍ୟା ପ୍ରଥମଥର ପାଇଁ ଏକ ପ୍ରକୋଷ୍ଠରେ ପରସ୍ପରକୁ ଜାଣିବା ପାଇଁ ଏକାଠୀ ହେଲେ, ପ୍ରସେନ୍‌ଜିତ୍‌ଙ୍କ ପ୍ରଶ୍ନର ଉତ୍ତର ଦେଇ ନପାରି କନ୍ୟା, ସାକ୍ଷାତ୍‌କାର ପରେ କାନ୍ଦି ପକେଇଥିଲେ । ତେଣୁ ତାଙ୍କ ମନରେ ରୋଷ ଥିଲା । ସେ ହାରିଗଲେ, ବିବାହ ପ୍ରସ୍ତାବ ଦେଖା ସାକ୍ଷାତ୍ ଇଣ୍ଟରଭ୍ୟୁରେ ।

ପ୍ରସେନ୍‌ଜିତ୍‌ଙ୍କ ବାପା ବୋଉଙ୍କୁ କନ୍ୟା ପକ୍ଷ ଗାଡ଼ି ପଠାଇ ବୋହୂ ଦେଖା ପାଇଁ ନେଇ ଯାଇଥିଲେ । ପ୍ରସେନ୍‌ଜିତ୍‌ଙ୍କ ମାଆ ପୁଅର ଶାରୀରିକ, ମାନସିକ ଅବସ୍ଥା, ତାଙ୍କର ଚିକିତ୍ସା ଆଦି ବିଷୟରେ ଅଧ୍ୟାପିକା କନ୍ୟାଙ୍କୁ କହିଥିଲେ । ''ମୁଁ ସବୁ ବୁଝିବି, ସମ୍ଭାଳି ନେବି'' ବୋଲି କନ୍ୟାଙ୍କ ପ୍ରତିଶ୍ରୁତି ପାଇ ବାପାମାଆ କନ୍ୟା ପସନ୍ଦ ହୋଇଛି ବୋଲି ସୂଚନା ଦେଇ ଆସିଲେ ।

କନ୍ୟା ପକ୍ଷ ବି ଘର ବର ଦେଖିବାକୁ ଆସିଲେ । ସେମାନେ ପ୍ରସ୍ତାବ ଦେଲେ - ଏଇ ଜୁଲାଇ ମାସର ଏକ ତିଥିରେ ବିବାହ କରି ନେବାକୁ । ପ୍ରସେନ୍‌ଜିତ୍‌ଙ୍କ ବାପା କହିଲେ - ନା, ଆପଣମାନେ ଛଅମାସ ସମୟ ନିଅନ୍ତୁ । ଘର ଓ ବର ସମ୍ପର୍କରେ ଭଲମନ୍ଦ ଅନୁସନ୍ଧାନ କରନ୍ତୁ । ମୁଁ ତ କେବଳ କନ୍ୟାର ଶିକ୍ଷା ଓ ଅଧ୍ୟାପିକା ପଦବୀ, ପୁଣି ଆଦିବାସୀ ଅଧ୍ୟୁଷିତ ଗୋବିନ୍ଦପାଟଣା ଅଞ୍ଚଳରେ - ଏ ସମସ୍ତ ବିଚାରକୁ ନେଇ 'ସର୍ବ ମଙ୍ଗଳ ଜଗନ୍ନାଥ' କରି ମନୋନୀତ କରି ନେଇଛି ।

ଏ ବିବାହ ପ୍ରସ୍ତାବକୁ ପ୍ରସେନ୍‌ଜିତ୍‌ଙ୍କ ଅଫିସ୍ ଓ ଅଧ୍ୟାପିକାଙ୍କ କଲେଜରେ ବିପୁଳ ଭାବେ ସ୍ୱାଗତ କରାଯାଇଥିଲା । ବର ଓ କନ୍ୟା ପକ୍ଷ ଜାନୁଆରୀ ମାସରେ ନିର୍ଦ୍ଦିଷ୍ଟ ତିଥିରେ ବିବାହ ପାଇଁ ପ୍ରସ୍ତୁତ ହେଲେ । ପ୍ରସେନ୍‌ଜିତ୍ ବିଭାଘର ହେବାକୁ ମାତ୍ର କୋଡ଼ିଏ ଦିନ ଅଛି, ଛୁଟିରେ ଆସିଥିଲେ, ବାପାଙ୍କୁ କହିଲେ - ମୋର ବିବାହ କରିବାକୁ ଇଚ୍ଛା ହେଉ ନାହିଁ । ଏ ବୟସରେ ବିବାହ ପ୍ରତି 'ଅର୍ଜ' ନାହିଁ । ବାପା ଆଶ୍ଚର୍ଯ୍ୟ ହୋଇ ପଚାରିଲେ - ଆରେ ଆଜି ଏପରି କ'ଣ କହୁଛୁ ? ତୋର ଆଗ୍ରହ ଓ ଭବିଷ୍ୟତ ବ୍ୟବସ୍ଥିତ ଜୀବନକୁ ଆଖିରେ ରଖି ତୋ ଭଲ ପାଇଁ ଏ ବିଭାଘର ହେବାକୁ ଯାଉଛି । ଏତେବେଳେ ଏପରି କହିଲେ କିପରି ହେବ ? ମନା କରି ଦେଲେ କନ୍ୟା ପକ୍ଷ ହତାଶ ହୋଇଯିବେ ଏବଂ ତୁମୁଳକାଣ୍ଡ କରି ବସିବେ । ଅତୀତରେ ପରା ଏମିତି ଗୋଟିଏ ପ୍ରସ୍ତାବ ଆଗେଇ ଚାଲିଥିବାବେଳେ ଆମେ ମନା କରି ଦେବାରୁ, କନ୍ୟାର ମାମୁଁ ଆସି ଆମ ଘରେ ବସି ମୋତେ ସିଧା ଚାଲେଞ୍ଜ୍ କରି କହିଲେ- 'ୟୁ ହାଭ୍ ଷ୍ଟାବଡ୍ ଆଟ୍ ଆଉଆର୍ ବ୍ୟାକ୍' । ସେତେବେଳେ ମୁଁ ନିଜକୁ ଦୋଷୀ ଭାବି କିଛି ଉତ୍ତର ଦେଇ ପାରି ନଥିଲି । ବର୍ତ୍ତମାନ ମନା କଲେ ତାହାର ପୁନରାବୃତ୍ତି ଘଟିପାରେ । ଏହା ଶୁଣିଲାପରେ ପ୍ରସେନ୍‌ଜିତ୍ ନୀରବ ରହିଥିଲେ । ବାପା ଧରିନେଲେ - ମୌନଂ ସମ୍ମତି ଲକ୍ଷଣମ୍' । ତଥାପି ବାପାଙ୍କ ମନରେ ଗ୍ଲାନି । କାହିଁକି ବିବାହ କରିବାକୁ ପୁଅ ବିତସ୍ପୃହ । ଏମିତି ଶ୍ମଶାନ ବୈରାଗ୍ୟ ଆସେ । ବିବାହ ଦିବସ ପାଖେଇ ଆସିଲେ ତାହା ଦୂର ହୋଇଯିବ । ଏହି ଆଶ୍ୱସ୍ତିକୁ ଭିତ୍ତିକରି ବିବାହ ଯୋଗାଡ଼ରେ ଆଗେଇ ଚାଲିଲେ ।

ବିବାହ ଅନୁକୂଳ ପାଇଁ ଫଟୋଗ୍ରାଫର୍ ପ୍ରସ୍ତୁତ । ବସନ୍ତରା ଅନୁକୂଳ ଘଟ ବସାଇଲା; ମାତ୍ର କିଛି ସମୟ ପରେ ଘଡ଼ିଟି ପାଣିରେ ମିଳେଇଗଲା । ଆଉ ଗୋଟିଏ ନୂଆ ଘଡ଼ି ଆଣିବା ନିମନ୍ତେ ପ୍ରସେନ୍‌ଜିତ୍‌ଙ୍କ ମାମୁଁ ମାର୍କେଟକୁ ଦୌଡ଼ିଲେ । ନୂଆଘଡ଼ି ଆସିଲା । ଅନୁକୂଳ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଫଟୋ ଉଠିଲା । ପ୍ରଥମ ଅନୁକୂଳ ଘଡ଼ି ମିଳେଇଯିବା ଦେଖି ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କ ମୁହଁ ମଉଳି ପଡ଼ିଲା । ସ୍ତ୍ରୀଙ୍କ ସହ କଥା ହେଲେ - ମନ ଭଲ ଲାଗୁ ନାହିଁ, କାହିଁକି ଅନୁକୂଳ ଘଡ଼ି ମିଳେଇଗଲା ? ସହଧର୍ମିଣୀ କହିଲେ - 'ସର୍ବ ମଙ୍ଗଳ ଜଗନ୍ନାଥ' କରି ଆମେ କରୁଥାଏଁ । ଘଡ଼ି କଞ୍ଚାଥିଲା ବୋଧେ; ସେଥିପାଇଁ ମିଳେଇ ଯାଇଥିବ । ତମ ମନ କାହିଁକି ପାପ ଛୁଉଁଛି ? ଭୁଲି ଯାଅ । ପୁଅ ବିଭାଘର ସମୟରେ ଆମେ କେତେ ଖୁସୀ ହେବା କଥା । ପୁଣି ଜ୍ୱିତ୍‌ର ବିଭାଘର । ସବୁ ଘଟଣା-ଅଘଟଣକୁ ଜଗନ୍ନାଥ ଅଛନ୍ତି । ସେ ହିଁ ଭରସା । ସେ ମଙ୍ଗଳମୟ !! ସେ ସବୁ ସମ୍ଭାଳିବେ ।

ବରଧରା ଆସି ପହଞ୍ଚିବା ପରେ ବର କନ୍ୟା ଗୃହକୁ ବିବାହ ଉଦ୍ଦେଶ୍ୟରେ ଶୁଭ ଅନୁକୂଳ ସମୟ ଦେଖି ବରଯାତ୍ରୀ ସମେତ ବାହାରିଲେ । ବର ଗାଡ଼ି ଆଗେ ଆଗେ ଚାଲିଥାଏ । ବରଯାତ୍ରୀମାନେ ପଛରେ ଏକ ବସ୍‌ରେ ଯାଉଥାନ୍ତି । ରାଜଧାନୀ ଉପକଣ୍ଠ ଇନ୍ଦୁପୁରଠାରେ ଏକ କଲ୍ୟାଣ ମଣ୍ଡପରେ ବିବାହ ସମ୍ପନ୍ନ ହେବ । ବରଗାଡ଼ି ଇନ୍ଦୁପୁର ଡେଇଁ ଚାଲିଲା ଆଗକୁ । ଅନ୍ଧାରରେ ଜାଣି ନପାରି ତୋଷାଳି ପର୍ଯ୍ୟନ୍ତ ଯିବାପରେ ବରଯାତ୍ରୀଙ୍କୁ ନେଇ ଯାଉଥିବା ବସ୍‌ରୁ ମୋବାଇଲ୍ ଫୋନ୍ କରାଗଲା ଯେ ବରଗାଡ଼ି ନିର୍ଦ୍ଦିଷ୍ଟ ଛକ ଡେଇଁ ଆଗକୁ ଚାଲିଯାଇଛି । ସେଠାରୁ ଇନ୍ଦୁପୁର ଛକକୁ ଫେରି ଆସନ୍ତୁ । ବରଗାଡ଼ି ଫେରିଲା ।

ବାଜା ଲାଇଟ୍ ବ୍ୟବସ୍ଥାରେ ସମୟାନୁବର୍ତ୍ତିତା ଅଭାବରୁ ପ୍ରସେସନ୍ ଡେରି ହେବାରୁ ବର ଓ କନ୍ୟା ପକ୍ଷ ମଧ୍ୟରେ କିଛି ସମୟ ଟଣା ଓଟରା ଲାଗିଲା । ତା'ପରେ କଲ୍ୟାଣ ମଣ୍ଡପରେ ବରକୁ ସ୍ୱାଗତ କରାଯାଇ ବିଭାଘର କାର୍ଯ୍ୟକ୍ରମ ଚାଲିଲା । ହାତଗଣ୍ଠି ପଡ଼ିବା, କଉଡ଼ି ଖେଳ, ବନ୍ଦାପନା ସରୁ ସରୁ ରାତି ୪ଟା । ନବ ବିବାହିତ ଦମ୍ପତିଙ୍କର ବିଦାୟବେଳ ଆଗତ । ଏଇ ସମୟରେ ବିବାହର ମଧ୍ୟସ୍ଥି ବରକନ୍ୟା ପାଇଁ ଉଦ୍ଦିଷ୍ଟ ଗାଡ଼ି ପନ୍ଦର ମିନିଟ୍ ପାଇଁ ନେଇଗଲେ ଯେ ୨ ଘଣ୍ଟା ଡେରିରେ ଫେରିଲେ । ସେତେବେଳକୁ ସିନ୍ଦୁରା ଫାଟିଲାଣି ।

ନବ ବିବାହିତ ପୁଅବୋହୂଙ୍କୁ ବାଦ୍ୟ ଶଙ୍ଖ ମହୁରି ଧ୍ୱନିରେ ସ୍ୱାଗତ କରିବାକୁ ଅପେକ୍ଷା କରିଥିବା ବାଦ୍ୟକାରମାନେ ସମୟ ଗଡ଼ିଯିବାରୁ ଚାଲି ଯାଇଥିଲେ । ପରେ ଫଟୋ ଉତ୍ତରଣ କରାଯାଇ ଥିବା ସିଡ଼ି ମଧ୍ୟରୁ ଗୋଟିଏ ଗାଏବ୍ ହୋଇଗଲା ।

ଏହିପରି ଅନୁକୂଳ ଘଡ଼ି ମିଳେଇବାଠାରୁ ବରକନ୍ୟା ନବ ବିବାହିତ ପୁତ୍ର ବଧୂ ରୂପେ ଗୃହ ପ୍ରବେଶ କରିବା ପର୍ଯ୍ୟନ୍ତ ଅନେକ ବିଘ୍ନ ଘଟି ଚାଲିଥିଲା । ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କ ଅଭିଜ୍ଞ ମନରେ ଏଥିପାଇଁ ଅଶାନ୍ତି ଓ କ୍ଷୋଭ ଜାତ ହେଉଥାଏ । ତେବେ ସବୁ ସେଇ ମଙ୍ଗଳମୟ ବିଶ୍ୱନିୟନ୍ତାଙ୍କ ଇଚ୍ଛା । ତାଙ୍କ ଇଚ୍ଛାକୁ ଅତିକ୍ରମ ଓ ବ୍ୟତିକ୍ରମ କରିବ କିଏ ?

ଏହା କ'ଣ ଅଦୃଶ୍ୟ ହାତର କରଣି ? ବିଧିର ବିଧାନ ? ପ୍ରସେନ୍‌ଜିତ୍‌ଙ୍କ ବିବାହର ପନ୍ଦର ଦିନପରେ ତାଙ୍କର ଜଣେ ପିଉଷୀ ପୁଅ ଭାଇଙ୍କର ବିବାହ ହେଲା । ପ୍ରସେନ୍‌ଜିତ୍‌ଙ୍କଠାରୁ ସେ ବୟସରେ ବଡ଼ ଥିଲେ । ତାଙ୍କୁ ମାମୁଁ ହିସାବରେ ପ୍ରସେନ୍‌ଜିତ୍‌ଙ୍କ ବାପା ବେଦୀ ଉପରେ ବର କର୍ତ୍ତାଭାବେ ବିବାହ କରାଇଥିଲେ । ସେ ଭଣଜା, ଭାଣେଜୀ ବୋହୂ କିଛି ଦିନ ପାଇଁ ପ୍ରସେନ୍‌ଜିତ୍‌ଙ୍କ ଘରକୁ ଆସିଥିଲେ । ଏଇ ଭାଣେଜୀ ବୋହୂ, ଯେ କି ପ୍ରସେନ୍‌ଜିତ୍‌ଙ୍କର ମାନ୍ୟରେ ଭାଉଜ ହେବେ; ବଡ଼ ମିଷ୍ଟଭାଷିଣୀ ଓ କର୍ମଠା ଥିଲେ । ସେହି ବୋହୂକୁ ପ୍ରସେନ୍‌ଜିତ୍‌ଙ୍କ ବୋଉ ମାଇଁ ଶାଶୁ ଭାବେ ଟିକିଏ ପ୍ରଶଂସା କରିଦେଲେ । ସେ କଥା ଅଧ୍ୟାପିକା ବୋହୂଙ୍କ ଦେହରେ ଗଲା ନାହିଁ । କହିଲେ - ବୋଉ କାହିଁକି କମ୍ପାଏର୍ କଲେ ? ବାସ୍ତବିକ୍ ପ୍ରସେନ୍‌ଜିତ୍‌ଙ୍କ ମାଆ ଦୁଇ ବୋହୂଙ୍କ ମଧ୍ୟରେ 'ତୁଳନା' କରି ନଥିଲେ । କେବଳ ଭାଣେଜୀ ବୋହୂର ଚାଲିଚଳଣିକୁ ପସନ୍ଦ କରିଥିଲେ ।

'ପ୍ରଥମ ଧାରଣା ଶେଷ ପର୍ଯ୍ୟନ୍ତ ରହିବା ନ୍ୟାୟ'ରେ ଶାଶୁଙ୍କୁ ସେହି ଦିନୁ ଅଧ୍ୟାପିକା ବୋହୂ 'ଲାଇକ୍' କଲେ ନାହିଁ । ପ୍ରସେନ୍‌ଜିତ୍‌ଙ୍କ ମାଆ ଜଣେ କଣ୍ଠ ଶିଳ୍ପୀ । ତାଙ୍କର କେତେକ ଗାନକୁ ପ୍ରସେନ୍‌ଜିତ୍ କ୍ୟାସେଟ୍ କରିଥିଲେ । ତାହାକୁ ଏପରି ବିବାହ ଘଡ଼ିରେ ଶୁଣାଇଲେ । ଶାଶୁଙ୍କର ଗୀତ ଶୁଣିବାକୁ ନବାଗତା ବୋହୂ କାହିଁକି ବିତୃଷ୍ଣା ପ୍ରକାଶ କଲେ । କହିଲେ - ତୁମେ ବୋଉଙ୍କର କ୍ୟାସେଟ୍ ଲଗାଇ ଥାଅ ଯେ ମୁଁ ଶୁଣୁ ନଥାଏ । ମୋତେ ଭଲ ଲାଗିଲା ନାହିଁ । ନିଜ ମାଆଙ୍କର ନବ ବିବାହିତା ପତ୍ନୀଙ୍କ ମୁହଁରେ ଅପସନ୍ଦ କରିବାଟାକୁ ପ୍ରସେନ୍‌ଜିତ୍ ଭଲ ଅର୍ଥରେ ଗ୍ରହଣ କରି ପାରିଲେ ନାହିଁ । 'ମୋ ବୋଉର କଥା, ଯେ କ'ଣ ପସନ୍ଦ କରୁ ନାହିଁ ? ମୋ ବୋଉ କ'ଣ, ତା'ର ମାଆ ନୁହେଁ ? ବିବାହିତା ଝିଅ ତ ବିବାହବେଦୀ ଉପରେ ହୋମାଗ୍ନିରେ ବାପମାଆ ଭାଇଭଉଣୀଙ୍କ ସମ୍ପର୍କକୁ ଆହୁତି ଦେଇ ଅନ୍ୟ ଘରକୁ ବୋହୂ ହୋଇ ଆସେ । ଏ ଘରେ ତା'ର ପ୍ରଭୂତ ସମ୍ପର୍କ, ଅଧିକାର । ଯେ ଘରର ସେ କୁଳ ଲକ୍ଷ୍ମୀ, କୁଳବଧୂ ।

କିଛିଦିନ ନିଜ ଘରେ ରହି କର୍ମକ୍ଷେତ୍ରକୁ ପ୍ରସେନ୍‌ଜିତ୍ ଅଧ୍ୟାପିକା ପତ୍ନୀଙ୍କୁ ସାଙ୍ଗରେ ନେଇ ବାହୁଡ଼ିଲେ । ସେଠାରେ ମାସେ ଦୁଇମାସ ରହଣି ପରେ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଲା । ସାଂସ୍କୃତିକ ବ୍ୟବଧାନ ଓ ଅଲଗା ଅଲଗା ମାନସିକତା ଦୁହିଁଙ୍କ ମଧ୍ୟରେ ଅନ୍ତରାୟ ରୂପେ ଠିଆହେଲା । ପ୍ରସେନ୍‌ଜିତ୍ 'ମହାଭାରତ' ଦେଖିବାକୁ ଟି.ଭି. ଖୋଲିଲେ, ଅଧ୍ୟାପିକା ପତ୍ନୀ ହିନ୍ଦୀ ଫିଲ୍ମ ଦେଖିବାକୁ ଜିଦ୍ କରିବେ । ଶେଷରେ ପତ୍ନୀଙ୍କ କଥା ରହେ । ଅବସ୍ଥା ଏପରି ହେଲା, ପ୍ରସେନ୍‌ଜିତ୍ ଯାହା ଚାହିଁଲେ, ତା'ର ଓଲଟା କଥା କରିବାକୁ ପତ୍ନୀ ଜିଦ୍ ଧରିଲେ । ଫଳରେ ଦୁହିଁଙ୍କ ମଧ୍ୟରେ ଯୁକ୍ତିତର୍କ ... । ଥରେ ଦି'ଥର ପ୍ରସେନ୍‌ଜିତ୍ କ୍ରୋଧ ସମ୍ଭରଣ କରି ନ ପାରି ହାତ ଉଠାଇଛନ୍ତି । ବେଲ୍ଟରେ ପିଟିଛନ୍ତି ବୋଲି ପତ୍ନୀ ଅଭିଯୋଗ କରନ୍ତି ।

ବାପା ବୋଉଙ୍କ କାନକୁ ଏ କଥା ଗଲା । କ'ଣ ଏପରି ଘଟିଲା ଯେ, ଜିତ୍‌କୁ ବୋହୂ ଉପରକୁ ହାତ ଉଠାଇବା, ବେଲ୍ଟରେ ପିଟିବା ପର୍ଯ୍ୟନ୍ତ ଘଟଣା ଗଲା ? ବାପା ଥରେ ଯାଇ କିଛିଦିନ ପୁଅ ବୋହୂଙ୍କ ପାଖରେ ରହିଲେ । ସେମାନଙ୍କର ଚାଲିଚଳଣି ଦେଖିଲେ । ବହୁତ ବୁଝାଇଲେ ।

ଚାକିରି କ୍ଷେତ୍ରରେ ଅସୁବିଧା । ତାକୁ ସୁଧାରିବାକୁ ପଡ଼ିବ । ଚାକିରି ସଜଡ଼ାହେବା ପର୍ଯ୍ୟନ୍ତ ପୁଅବୋହୂ ଏହିଠାରେ ରହିଗଲେ ଭଲ । ତା'ପରେ ବଦଳିହୋଇ ନିଜ ଅଞ୍ଚଳକୁ ଚାଲିଯିବେ । ଏ କଥା କେତେ ଥର ଆଲୋଚନା ଛଳରେ ବାପା କହି ସାରିଲେଣି । ବୋହୂ ତା ଜିଦ୍‌ରେ ଅଟଳ । ପ୍ରସେନ୍‌ଜିତ୍ ସ୍ତ୍ରୀଙ୍କ ଜିଦ୍ ନିକଟରେ ଅସହାୟ ହୋଇ ପଡ଼ିଲେ । ତାଙ୍କର ମନବଳ ଦୁର୍ବଳରୁ ଦୁର୍ବଳତର ହେଲା । ସେ ଅନ୍ୟମନସ୍କ ରହିଲେ । କାମଦାମରେ ମନ ଲାଗିଲା ନାହିଁ । ସ୍ତ୍ରୀ ସବୁବେଳେ ତାଙ୍କୁ ନିଜ ଅକ୍ତିଆର୍‌ରେ ରଖିବାକୁ ଚାହିଁଲେ ଓ ନିଜର ପ୍ରତିପତ୍ତି ଜାହିର୍ କଲେ । ଅଧ୍ୟାପିକା ସ୍ତ୍ରୀଙ୍କର ବ୍ୟବହାର କଥା, ଛୁଟିରେ ଆସିଲେ ପ୍ରସେନ୍‌ଜିତ୍ ବାପା ବୋଉଙ୍କୁ କହନ୍ତି । କର୍ମ କ୍ଷେତ୍ରରୁ ଫୋନ୍‌ରେ ମଧ୍ୟ ଜଣାନ୍ତି । ବୋଉ ବହୁତ ବୁଝାନ୍ତି । ବାପାରେ, ତୁ ସମ୍ଭାଳି ଯାଆ । ଯୁକ୍ତିତର୍କ ଆଡ଼କୁ କଥା ଆସିଲେ, ଘରଛାଡ଼ି ବାହାରେ ଘେରାଏ ବୁଲି ଆସିବୁ । ସାଙ୍ଗସାଥୀଙ୍କ ଘରକୁ କି ଅଫିସ୍ ଆଡ଼େ ଚାଲିଯିବୁ ।

ମଝିରେ କାଳ ହେଲା, ବିବାହ ପ୍ରସ୍ତାବ ଆଣିଥିବା ଭଦ୍ରଲୋକ । ସେ ବାରମ୍ବାର ପ୍ରସେନ୍‌ଜିତ୍ ଥିବା ବା ନଥିବା ସମୟରେ ଅଧ୍ୟାପିକାଙ୍କ ପାଖକୁ କୌଣସି କାମ ଆଳରେ କଥାବାର୍ତ୍ତା କରିବାକୁ ଆସିଲେ । ତାହା ପ୍ରସେନ୍‌ଜିତ୍‌ଙ୍କ ଦେହରେ ଗଲା ନାହିଁ । କିନ୍ତୁ ଭଦ୍ରଲୋକ ସାମ୍ନାରେ କିଛି କହନ୍ତି ନାହିଁ, ଯେହେତୁ ସେ ଦୂର ସମ୍ପର୍କୀୟ ବନ୍ଧୁ । ତାଙ୍କ

ଆସିବାକୁ ପ୍ରସେନ୍‌ଜିତ୍ ବିରୋଧ କଲେ, ଅଧ୍ୟାପିକା ପତ୍ନୀ କହନ୍ତି – ତୁମେ ଏତେ ମିନ୍, ମୁଁ ଜାଣି ନଥିଲି । ପ୍ରସେନ୍‌ଜିତ୍ ନଥିଲାବେଳେ ସ୍ତ୍ରୀଙ୍କ ସହିତ ସେ ଭଦ୍ରବ୍ୟକ୍ତି ଘନିଷ୍ଠ ଭାବେ କଥାବାର୍ତ୍ତା କରିବା, ଚା ଜଳଖିଆ ଖାଇବା, ଏପରିକି କିଚିନ୍ ରୁମ୍‌ରେ ଆଳାପ ସହ ପାଖାପାଖି ବସି ଭୋଜନ କରିବା ପ୍ରସେନ୍‌ଜିତ୍‌ଙ୍କୁ ଗଭୀର ଚିନ୍ତାଗ୍ରସ୍ତ କରିଦେଲା । କ'ଣ କରିବେ ? ଯା ପାଖରେ ଏ ପରିସ୍ଥିତିରେ କିପରି ଚଳିବେ ? ଘଣ୍ଟା ଘଣ୍ଟା ଏମିତି ଚିନ୍ତା କରି ପ୍ରସେନ୍‌ଜିତ୍ କ୍ଲାନ୍ତ ହୋଇ ଶୋଇ ପଡ଼ନ୍ତି । ପୁଣି ଏପରି ଅବସ୍ଥା ହେଲା, ରାତି ଗୋଟାଏ ଦୁଇଟା ପର୍ଯ୍ୟନ୍ତ ତାଙ୍କୁ ନିଦ ହୁଏ ନାହିଁ । ପାହାନ୍ତା ପହରକୁ ନିଦ ଆସେ ଯେ ଉଠୁ ଉଠୁ ଦିନ ୮ଟା ୯ଟାରେ ନିଦ ଭାଙ୍ଗେ । ଶୀଘ୍ର ନିଦ ହେବାକୁ ଡାକ୍ତରଙ୍କ ସହ ପରାମର୍ଶ କରି ନିଦ ବଟିକା ଖାଇଲେ ମଧ୍ୟ କାମ ଦେଲା ନାହିଁ । ମଣିଷ ମୁଣ୍ଡରେ ଥରେ ଅବିଶ୍ୱାସ ପଶିଗଲେ, ତାକୁ ଔଷଧ ବାହାର କରିପାରେ ନାହିଁ । କେବଳ ସ୍ୱାମୀସ୍ତ୍ରୀର ନିଷ୍କପଟ ଖୋଲା ଆଲୋଚନା ଓ ବୁଝାବଣା ଦ୍ୱାରା ହିଁ ତାହା ଦୂର ହୋଇପାରେ ।

ଏ କଥା ବୁଝିଲେ ନା ପ୍ରସେନ୍‌ଜିତ୍, ନା ତାଙ୍କର ଶିକ୍ଷିତା ଅଧ୍ୟାପିକା ପତ୍ନୀ । ଯିଏ ଯାହାର ଜିଦ୍‌ରେ ଅଟଳ ।

ପରୀକ୍ଷା ଖାତା ଦେଖିବା ପାଇଁ ଅଧ୍ୟାପିକାଙ୍କର ଖାତା ଦେଖା କେନ୍ଦ୍ରକୁ ଯିବାକୁ ଦରକାର ପଡ଼ିଲା । ପ୍ରସେନ୍‌ଜିତ୍‌ଙ୍କ ପାଖରେ ମାସେ ରହିବା ପାଇଁ ବୋଉ ଗଲେ । ସେଇ ମାସଟି ବୋଉଙ୍କ ହାତରୁ ଖାଇପିଇ ପ୍ରସେନ୍‌ଜିତ୍ ଆଶ୍ୱସ୍ତିରେ ଥିଲେ । ଅଧ୍ୟାପିକା ପତ୍ନୀ ପରୀକ୍ଷା ଖାତା ଦେଖି ଫେରିବା ପରେ ଏକ ମାସ ପରେ ନବ ବିବାହିତ ପତି-ପତ୍ନୀ ପୁନର୍ମିଳନରେ କେତେ ଆନନ୍ଦିତ ହେବା କଥା ! ମାତ୍ର ତାହା ଘଟିଲା ନାହିଁ । ଶାଶୁ ବୋହୂଙ୍କୁ ବହୁତ ବୁଝାଇଲେ । ଥରେ କାନ୍ଦି ପକାଇଲେ ଏବଂ ବିବାହ କରାଇବାରେ ମଧ୍ୟସ୍ଥୀ ଭୂମିକା ନିର୍ବାହ କରିଥିବା ବ୍ୟକ୍ତିଙ୍କୁ ମଧ୍ୟ କାନ୍ଦି କାନ୍ଦି କହିଲେ । ପୁଅ, ଏ ସବୁ କ'ଣ ଘଟୁଛି, ମୁଁ କ'ଣ ଦେଖୁଛି । ପୁଅବୋହୂଙ୍କ ମଧ୍ୟରେ ମେଳ ନାହିଁ ପୁଅ, ତମେ ତ କେତେ ସାର୍ଟିଫିକେଟ ଦେଇଥିଲ । ମୁଁ ଦେଖୁଛି, ଘରେ ପଶୁ ପଶୁ ମୁଣ୍ଡରେ ଚାଳ ବାଜିଲା ପରି ଅବସ୍ଥା । ତୁମେ ଟିକିଏ ବୋହୂକୁ ବୁଝାଅ । ସେ କାହିଁକି ସ୍ୱାମୀ ସହିତ ଭଲରେ କଥା ହେଉ ନାହିଁ । ଭାତ ବାଢ଼ିଦେଇ ତା ବାଟରେ ସିଏ । ଆଉ ଖାଇବ କି ନାହିଁ, ପଚରା ଉଚରା ନାହିଁ । ଶିକ୍ଷିତା ଝିଅଗୁଡ଼ାକ ବୋହୂ ପଣିଆ କ'ଣ, ସ୍ତ୍ରୀ ପଣିଆ କ'ଣ କିଛି ଶିଖୁ ନାହାନ୍ତି ।

ଏ କଥା କ'ଣ ସ୍କୁଲ କଲେଜରେ ଶିକ୍ଷା ଦିଆଯାଏ ? ଘରେ ମାଆ, ବଡ଼ଭଉଣୀ କିପରି ସ୍ୱାମୀ ପାଖରେ, ଶାଶୁଶ୍ୱଶୁର ପାଖରେ ଚଳିବାକୁ ହୁଏ ଶିଖାଇ ନାହାନ୍ତି ? ତା

ନ ହେଲା ନାହିଁ, ଖବର କାଗଜରେ କି ଟି.ଭି. ସିରିୟଲ୍‌ରେ ପଢ଼ି ଦେଖି ଏତକ ଶିଖି ନାହିଁ ? ଭଦ୍ରଲୋକ କହିଲେ – ମୁଁ ତାକୁ ପଚାରିବି –

ଭଦ୍ରଲୋକ କ'ଣ ପଚାରିଲେ କି କ'ଣ କହିଲେ, ଫଳ ଓଲଟା ହେଲା । 'ମତେ ନ କହି, କାହିଁକି ଭଦ୍ରଲୋକକୁ କହିଲେ' – ବୋହୂଙ୍କର ରୋଷ, ଅଭିମାନ । ଭଲା, ମହରଗରୁ ଯାଇ କାନ୍ତାରରେ ପଡ଼ିବାକୁ ପଡ଼ିଲା – ଭାବିଲେ ଶାଶୁ ।

ଦିନେ ସାମ୍ନା ଘରେ ଥିବା ଜେ.ଇ.ଙ୍କ ପତ୍ନୀ ସକାଳୁ ସକାଳୁ ବୁଲି ଆସିଲେ । ପ୍ରସେନ୍‌ଜିତ୍ ଘରେ ଥାଆନ୍ତି । ଅଧ୍ୟାପିକା ପତ୍ନୀ ବି କଲେଜକୁ ଯିବା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଆଗନ୍ତୁକା ଭଦ୍ର ମହିଳା, ଦେଖିବାକୁ ଲାବଣ୍ୟମୟୀ, ଭଦ୍ରା, କୋମଳ ଭାଷିଣୀ, ଚାରୁଶିଳା । ପ୍ରସେନ୍‌ଜିତ୍ ଡ୍ରଇଂରୁମରେ ବସିବାକୁ କହିଲେ । ଚା ଆଣି ଦେବାକୁ ଅଧ୍ୟାପିକା ପତ୍ନୀଙ୍କୁ କହିଲେ । ନାଇଁ ନାଇଁ, ମୁଁ ଚା ଖାଏ ନାହିଁ । ମ୍ୟାଡ଼ାମ୍ ତ ଏଠାରେ ଅଧ୍ୟାପିକା । ତାଙ୍କୁ ଦେଖିଥିଲି । ଆପଣ ଯେ ଏ.ଓ. ହୋଇ ଏଠାରେ ଯୋଗ ଦେଇଛନ୍ତି । ମୁଁ ତାଙ୍କଠାରୁ ଶୁଣିଥିଲି । ଏବେ ଆପଣ ଦୁଇଙ୍କର ଶୁଭ ବିବାହ ପରେ ଟିକିଏ ଶଙ୍ଖୋଳିବାକୁ ଆସିଲି । ପ୍ରସେନ୍‌ଜିତ୍ – ଯା' ହେଉ, ଭଲ ହେଲା ।

ପ୍ରାୟ ଘଣ୍ଟାଏ କାଳ ପ୍ରସେନ୍‌ଜିତ୍ ଭଦ୍ର ମହିଳାଙ୍କ ସହ ଗପ କଲେ । ଅଫିସ୍, ସମାଜ, ଏ ଅଞ୍ଚଳ, ଆମ ସେପଟ ଉପକୂଳ ବର୍ତ୍ତୀ ଚଳଣି, ରଜନୀଶ, କୃଷ୍ଣମୂର୍ତ୍ତି, ପରମହଂସ ଯୋଗାନନ୍ଦ – ତିଳରୁ ତାଳ ଓ ତଳିପାରୁ ତାଳୁ ପର୍ଯ୍ୟନ୍ତ କଥା ପଡ଼ିଲା । ବଡ଼ ଖୁସୀ ମନରେ ଭଦ୍ର ମହିଳା ଗଲେ । ବାସ୍ତବିକ୍, ଏ.ଓ. କେତେ କଥା ଜାଣିଛନ୍ତି ।

ପଡ଼ୋଶୀ ଜେ.ଇ.ଙ୍କ ପତ୍ନୀ ଯିବାପରେ ଅଧ୍ୟାପିକା ପତ୍ନୀ କହିଲେ – ଏତେ ସମୟ କଥା ହେଲ । ମୁଁ ଅଟକିଗଲି, କଲେଜ ଯିବାକୁ । ରୋଷେଇ ଓ ଅନ୍ୟାନ୍ୟ କାମ ବନ୍ଦ ହୋଇଗଲା । ଆଉ ଦିନେ ଏପରି କରିବ ନାହିଁ । ସେ ସ୍ତ୍ରୀ ଲୋକ ଭଲ ନୁହଁନ୍ତି । ପ୍ରସେନ୍‌ଜିତ୍ ବିସ୍ମୟ ବିସ୍ଫାରିତ ନୟନରେ ଚାହିଁ ରହି ପଚାରିଲେ – କ'ଣ କହୁଛ ? ପଡ଼ୋଶିନୀ ଜଣେ ଆସିଲେ, ପ୍ରଥମ ଥର ପାଇଁ । ତାଙ୍କ ସହ ଟିକିଏ କଥା ହେବୋନି ? ଆମ ସୌଜନ୍ୟ ସମ୍ପର୍କରେ କ'ଣ ଠଉରେଇବେ ? 'ହଉ, ତୁମ ସୌଜନ୍ୟ ତୁମେ ରଖ । ସତେ ଯେମିତି ମତେ ସୌଜନ୍ୟ ଜଣା ନାହିଁ । କେବଳ ତମକୁ ଆଉ ସେ ଭଦ୍ର ମହିଳାଙ୍କୁ ଜଣା ।' ପ୍ରସେନ୍‌ଜିତ୍ ଯୁକ୍ତିତର୍କକୁ ଏଡ଼ାଇ ଅନ୍ୟ ରୁମ୍‌କୁ ଚାଲିଗଲେ । ଅଧ୍ୟାପିକା ହାତ ଘଡ଼ିକି ଚାହିଁ ଭୁଷ୍, ଭୁଷ୍ କଲେଜକୁ ବାହାରି ଗଲେ । ପ୍ରସେନ୍‌ଜିତ୍ ଚିନ୍ତା କରୁଛନ୍ତି, ବିବାହ ପୂର୍ବରୁ ସେ କ'ଣ ଦେଖିଥିଲେ, କ'ଣ ଶୁଣିଥିଲେ । ଆଜି କ'ଣ ଦେଖୁଛନ୍ତି, କ'ଣ ଶୁଣୁଛନ୍ତି ... ।

ବୋଉ ବୁଝାବୁଝି କରି ଦୁହିଁଙ୍କୁ ଭଲରେ ଚଳିବାକୁ କେତେ କହିଲେ । ଚାରି ଦିନ ପରେ ଦଶହରା ଛୁଟି ପଡ଼ିଲା । ପ୍ରସେନ୍‌ଜିତ୍ ବୋଉ ଓ ସ୍ତ୍ରୀଙ୍କୁ ନେଇ ଘରକୁ ଫେରିଲେ । 'ଯା ହେଉ, ବଡ଼ ଭାଉଜ ଆସିଥିବେ । ତାଙ୍କର ବିଦ୍ୟାଳୟ ଛୁଟି ହୋଇଥିବ । ସାନ ଭାଉଜ ତ ଅଛନ୍ତି । ସମସ୍ତେ ମିଶି ଗୋଟାଏ 'ଗେଟ୍-ଟୁଗେଦର' ପରିବେଶରେ ପୂଜା ଛୁଟିଟା କଟିଯିବ । ପ୍ରସେନ୍‌ଜିତ୍‌ଙ୍କ ମନରେ କେତେ ଆଶା, କେତେ ଆନନ୍ଦ । ପୁଅ ବୋହୂ ପୂଜା ଛୁଟିରେ ଘରକୁ ଆସିବା ଦ୍ୱାରା ବାପା ମାଆଙ୍କ ଆନନ୍ଦ ନ ସରେ । ପହଞ୍ଚିବା ପରଦିନ ପ୍ରସେନ୍‌ଜିତ୍‌ଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ଡାକ୍ତର ପରାମର୍ଶ କରିବାକୁ ବାପା କଟକ ନେଇଗଲେ । 'ମାନ୍ଦା ମାନ୍ଦା ଲାଗୁଛି' କହିବାରୁ ଡାକ୍ତର ଔଷଧ ପରିମାଣ କିଛି କମାଇ ଦେଲେ । ଡାକ୍ତରଙ୍କଠାରୁ ଫେରିବା ଦିନ ସନ୍ଧ୍ୟାରେ ମିଷ୍ଟର୍ ପାଣି ଆସି ପହଞ୍ଚିଲେ । ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ବାପା, ବୋଉ, ବଡ଼ ଭାଇ ଓ ପ୍ରସେନ୍‌ଜିତ୍‌ଙ୍କୁ ମି. ପାଣି ପ୍ରାଣାୟାମ୍ ଶିକ୍ଷା ଦେଲେ । ସମସ୍ତେ ପ୍ରାଣାୟାମ୍ ଅଭ୍ୟାସ କଲେ । ଏତିକି ବେଳକୁ ପ୍ରନେ୍‌ଜିତ୍‌ଙ୍କ ଉପର ସଢୁ ଓ ଦେଢ଼ଶାଶୁ ପହଞ୍ଚିଥିଲେ । କହିଲେ- ଏ ବର୍ଷ 'ବିଶ୍ୱକର୍ମା ପୂଜା' ସେପ୍ଟେମ୍ବର ୧୭ରେ ଆମ ପରିବାରରେ ଅଶୌଚ କର୍ମଯୋଗୁଁ ହୋଇ ପାରି ନାହିଁ । ଦଶହରା ଭିତରେ ସେ ପୂଜା କରିନେବୁ । ପ୍ରସେନ୍‌ଜିତ୍ ଓ ଗୀତାଙ୍କୁ ବିଶ୍ୱକର୍ମା ପୂଜାରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରିବାକୁ ଆସିଛୁ । ଦେଢ଼ଶାଶୁ କହିଲେ - ବେଶୀଦିନ ନୁହେଁ, କେବଳ ଦୁଇଦିନ ଗୀତା ରହି ଆସିବ । ପୂଜାଦିନଟି କେବଳ ଜିତ୍ ବାବୁ ଯାଇ ପୂଜାରେ ଯୋଗଦେଇ ଚାଲି ଆସିବେ । ଏଥିରେ ବାପା ମାଆ ରାଜି ହୋଇଗଲେ । ତେବେ ବୋହୂ ଗୀତା କହିଲେ - ମୁଁ ଦିନକ ଆଗରୁ ଯିବି । 'ହଉ, ସେଥିରେ କିଛି ଅସୁବିଧା ନାହିଁ, ଜିତ୍ ପୂଜା ଦିନ ହିଁ ଯାଇ ପହଞ୍ଚିବ'- ବାପା କହିଲେ ।

ସଢୁଙ୍କ ଘରକୁ ଯିବାପାଇଁ ଦୁଇଦିନ ଆଗକୁ ଅଛି । ତେଣୁ ପ୍ରସେନ୍‌ଜିତ୍ ଗୀତାଙ୍କୁ ନେଇ ଇଞ୍ଜିନିୟର ଭାଇ ଭାଉଜଙ୍କୁ ଦେଖା କରିବାକୁ ଗଲେ । ସାନ ଭାଇ ଓ ବୋହୂକୁ ଦେଖି ଇଂଜିନିୟର୍ ଭାଇ, ଭାଉଜ, ପୁତୁରା ଝିଆରୀ ସବୁ ଆନନ୍ଦରେ ଅଧୀର ହୋଇଗଲେ । ରୋଷେଇ ବାସ ହେଲା । ସମସ୍ତେ ଏକାଠି ବସି ଖାଇଲେ । ଗୀତା, ବଡ଼ ଯାଆ ରିତାଙ୍କୁ ଖାଇ ବସିବା ବେଳେ କହିଲେ - ଅପା, ଜିତ୍‌ଙ୍କୁ ପାରିହେବ ନାହିଁ । ମୁଁ କାଲି ମୋ ଦିଦି ଘରକୁ ଯିବି ଯେ, ସିଆଡୁ ସିଆଡୁ ସରସ୍ୱତୀପୁର ଯିବି । ସେ ତାଙ୍କ ବାଟେ ଯିବେ । ମୁଁ କେବଳ ତାଙ୍କୁ ରୋଷେଇ କରି ଦେବାକୁ ରହିବି । ଏ କଥା ଶୁଣି ବଡ଼ ଯାଆ ତାଜୁବ୍ ହୋଇଗଲେ । 'ଗୀତା, ଏପରି କ'ଣ କହୁଛୁ ? କ'ଣ ରୋଷେଇ କରିବାକୁ ବିଭା ହୋଇଥିଲୁ ?' 'ନାଇଁ ଅପା, ତୁମକୁ ସବୁ କଥା

କହିବାକୁ ବେଳ ନାହିଁ । ଏ ମୋ କଥାରେ ନାହାନ୍ତି । ତାଙ୍କ ଇଚ୍ଛା ଉପରେ ମୁଁ ଚଳି ପାରିବି ନାହିଁ ।' ଏକଥା ଶୁଣି ରିତା ଚିନ୍ତିତ ହୋଇଗଲେ । କାହାକୁ କ'ଣ କହିବେ । ସବୁ ପେଟ ଭିତରେ ରଖିଲେ । ତେବେ ଗୀତା କାହିଁକି ଏପରି କହୁଛି ? ଶାଶୁ, ଶଶୁରଙ୍କୁ କହିଦେବେ କି ? ...ସେମାନେ ବଳେ ବଳେ ଜାଣିବେ । ଆମେ କାହିଁକି ସେଥିରେ ପଶିବୁ ?' ଦୁଇତିନି ଘଣ୍ଟା ଇଂଜିନିୟର ଭାଇଙ୍କ ଘରେ କଟାଇ ପ୍ରସେନ୍‌ଜିତ୍ ଗୀତା ସହିତ ଘରକୁ ଫେରିଲେ ।

ସତେବେଳକୁ ବଡ଼ ଭାଉଜ ବିଦ୍ୟାଳୟ ଛୁଟି ହେବାରୁ, ଘରେ ଆସି ପହଞ୍ଚିଥାନ୍ତି । ତାଙ୍କୁ ଦେଖି ପ୍ରସେନ୍‌ଜିତ୍ ଖୁସି ହୋଇଗଲେ । କଥା ହେଲେ । ଉଭୟ ଅଧାପିକା । ତେଣୁ କଲେଜ, ସ୍କୁଲ, ଛାତ୍ରଛାତ୍ରୀ ସମସ୍ୟା ନେଇ କିଛି କିଛି କଥା ହେଲେ । ବଡ଼ ଯାଆ କହିଲେ – ଗୀତା, ଯେ ତ ଆମ ଶିକ୍ଷୟିତ୍ରୀ ଜୀବନର ନିତିଦିନିଆ ସମସ୍ୟା । ତାକୁ ଛାଡ଼ । ଦୁଇ ତିନି ଦିନ ଏକାଠି ରହିବା, ଟିକିଏ ମନ ଖୁସୀ କରିବା । ତେବେ ମୁଁ ଆଜି ଆମ ଗାଁକୁ ଯାଉଛି । ବାପା ବୋଉଙ୍କୁ ଦେଖି ଆସିବି । ଗୀତା ବି କହିଲେ – ଅପା, ମୁଁ ଆଜି ସନ୍ଧ୍ୟାରେ ଦିଦି ଘରକୁ ଯିବି । ଦି' ତିନି ଦିନ ରହି ଆସିବି, ସେମାନେ ପରା ଜିତ୍‌ଙ୍କୁ 'ଜୁଆଇଁ ଡାକରା' ଦେଇ ଯାଇଛନ୍ତି । ବଡ଼ ଯାଆ ଦମୟନ୍ତୀ କହିଲେ – ଆଚ୍ଛା ! ତୁମେ ଫେର, ମୁଁ ଗାଁରୁ ଫେରେ । ପୁଣି ମିଶିବା, କଥା ହେବା ।'

ସନ୍ଧ୍ୟାକୁ ଭଉଣୀ ଭେଣୋଇ ଗାଡ଼ି ପଠାଇଲେ । ଗୀତା ଗାଡ଼ିରେ ଭଉଣୀ ଘରକୁ ଚାଲିଗଲେ । ତା'ପରଦିନ ଅପରାହ୍ନରେ ପ୍ରସେନ୍‌ଜିତ୍ ସଡୁଙ୍କ ଘରେ ପହଞ୍ଚିଲେ ଜଣେ ସମ୍ପର୍କୀୟ ଭାଇଙ୍କ ସାଙ୍ଗରେ । ସଡୁ ଏନ୍‌ଫୋର୍ସ୍‌ମେଣ୍ଟରେ କାମ କରନ୍ତି । ତେଣୁ କେବଳ ବିଶ୍ୱକର୍ମା ପୂଜା ଯୋଗୁଁ ଉପସ୍ଥିତ ଥିଲେ । ପ୍ରସାଦ ସେବନ ପରେ ନିଜ ଡିଉଟିରେ ବାହାରିଗଲେ । ସାଧାରଣତଃ ସେ ବେଶୀ ସମୟ ଘରେ ରହି ପାରନ୍ତି ନାହିଁ । କେବଳ ମଧାହ୍ନ ସମୟରେ ଭୋଜନ ପାଇଁ ଘଣ୍ଟାଏ ଓ ରାତ୍ରିରେ ୧୧ଟା ୧୨ଟା ପରେ ଶୋଇବା ପାଇଁ ଘରକୁ ଆସନ୍ତି । ସକାଳ ୮ଟାରୁ ପୁଣି ଡିଉଟି ଉପରେ ।

ବଡ଼ ସଡୁ ଚାଲିଗଲା ପରେ ଦେଢ଼ଶାଶୁ, ପ୍ରସେନଜିତ୍ ଓ ଗୀତା କଥାବାର୍ତ୍ତା ହେଲେ । ପ୍ରସେନ୍‌ଜିତ୍ ଗୋଟିଏ ଅଭିଯୋଗ ଆଣିଲେ, ସେ ଭଦ୍ର ବ୍ୟକ୍ତି କାହିଁକି ଆମ ବସାରେ ମଟର ସାଇକେଲ ରଖିବ ଓ ବାରମ୍ବାର ଆସି ଆମ 'ପାଇଭ୍ରାସି' ଉପରେ ହସ୍ତକ୍ଷେପ କରିବ ? ଦେଢ଼ ଶାଶୁ କହିଲେ – ସେ ପରା ତୁମର ଦୂର ସମ୍ପର୍କୀୟ ବନ୍ଧୁ । ସେ ତୁମର ବିବାହ ପ୍ରସ୍ତାବ ଆଣିଥିଲେ । ତେଣୁ ତାଙ୍କ ଯିବା ଆସିବା କରିବାକୁ ତୁମେ

କାହିଁକି ଅପସନ୍ଦ କରୁଛ ? ତାଙ୍କର 'ଦାଦାଗିରି' ମୋତେ ଭଲ ଲାଗୁ ନାହିଁ - କହିଲେ ପ୍ରସେନ୍‌ଜିତ୍ । ପୁଣି ଗୀତାକୁ 'ମ୍ୟାଡ଼ାମ୍' ଡାକୁଥିଲେ, ଏବେ ଡାକୁଛନ୍ତି - ଗୀତା, ଗୀତା ଆସିଲୁ, ଗୀତା ଚାଲିଲୁ । ପୁଣି ମୋ ସାମ୍ନାରେ । ମୋତେ - 'ଜିତ୍ ଶୁଣ୍, ଆ କି ଯା' କହିବାରେ ମୋର ଆପତ୍ତି ନାହିଁ । ମୋ ସ୍ତ୍ରୀକୁ ମୋ ସାମ୍ନାରେ ଏପରି କହିବ ? ସେ କ'ଣ ଗୀତାର ମାଆ ପେଟରୁ ଜନ୍ମିତ ଭାଇ ଯେ ଏପରି ବ୍ୟବହାର ... ? ସେ ବହୁତ ଅପର୍ ହାଣ୍ଡ୍ ନେଉଛନ୍ତି । ମୁଁ କିଛି କହିପାରୁ ନାହିଁ । ସାହିଯାଉଛି । ଦିନେ ମୋର ଧୈର୍ଯ୍ୟ ଚ୍ୟୁତି ଘଟିଲେ, ପାଟିରୁ ବାହାରିଯିବ - 'ଗେଟ୍ ଆଉଟ୍' । ସେତେବେଳେ ଗୀତା ମୋର କ'ଣ କରିବ ? ଏମିତି ତିନିଜଣଙ୍କ ମଧ୍ୟରେ ବହୁ ଯୁକ୍ତି ତର୍କ ଲାଗିଲା । ଦେଢ଼ଶାଶୁ କହିଲେ - ଗୀତା ତୁମକୁ ଦରମା ଟଙ୍କା ମାଗିବ ନାହିଁ, ତୁମେ ଯାଚି କରି ଦେବ । ତୁମ ବୋଉ ଫୋନ୍‌ରେ ଯାହା କହୁଛନ୍ତି, ତୁମେ ସେମିତି ପରିଚାଳିତ ହେଉଛ । ଘରକୁ ଫୋନ୍ କରି ବହୁତ ପଇସା ଖର୍ଚ୍ଚ କରୁଛ । ଗୀତା ବିରୁଦ୍ଧରେ କହୁଛ । ମୁଁ ଦେଖୁଛି - ତୁମର ସବୁ ଭୁଲ୍ ।

ପ୍ରସେନ୍‌ଜିତ୍ ଆଶା କରି ନଥିଲେ, ବିଶ୍ୱକର୍ମା ପୂଜାରେ ଯୋଗଦେବା ପାଇଁ ଡାକି ଗୀତା ଏପରି ତା'ର ବଡ଼ଭଉଣୀ ସାମ୍ନାରେ ଅପମାନିତ କରିବ ବୋଲି । ରାତିରେ ରହି ଯିବାକୁ ସେମାନେ କହୁଥିଲେ । ମାତ୍ର ପ୍ରସେନ୍‌ଜିତ୍ ତାଙ୍କର ଅନେକ କାମ ଅଛି, ପରେ ଆସିବେ କହି ଚାଲି ଆସିଲେ । ଏକ ଯୋଜନାବଦ୍ଧ ଭାବେ ତାଙ୍କୁ ଏବଂ ତାଙ୍କ ବାପା ବୋଉଙ୍କୁ 'ବ୍ଲାକ୍‌ମେଲିଂ' କରିବା ପାଇଁ ଗୀତା ଏ ଯେଉଁ ବ୍ୟବସ୍ଥା କଲା, ସେଥିରେ ସେ ଭୀଷଣ ଭାବେ କ୍ଷୁବ୍ଧ ହେଲେ । କ୍ରୋଧମିଶ୍ରିତ ଦୁଷ୍ଚିନ୍ତା ତାଙ୍କ ଶିରା ପ୍ରଶିରାକୁ ଚରିଗଲା । ସେ ଭଦ୍ରଲୋକଠାରେ ଏମାନଙ୍କ କି ମୋହ ଲାଗିଛି ? ବିଭାଘର କରାଇଦେବା ପରେ ତା'ର ଆଉ କି ଭୂମିକା, କି ସମ୍ପର୍କ ଏବଂ କାହା ସ୍ୱାର୍ଥ ପାଇଁ ? ଏହି ପ୍ରଶ୍ନ ପ୍ରସେନ୍‌ଜିତ୍‌ଙ୍କୁ ଅତିଷ୍ଠ କରିଦେଲା । ସେ ବାପା ବୋଉଙ୍କୁ ଏ କଥାର କିଛି କିଛି ସୂଚନା ଦେଲେ ।

ଥରେ ବାପା ଦୁଇଘଣ୍ଟା କାଳ ଫୋନ୍ କରି ସେ ଭଦ୍ରଲୋକକୁ ବୁଝାଇଲେ । ସେ ଭଦ୍ର ଲୋକ କହିଲେ - କ'ଣ ଆପଣ ଜଣେ ଏତେ ବଡ଼ ପ୍ରଶାସନିକ ଅଫିସର୍ ଥିଲେ, ଏତେ ଛୋଟ ଛୋଟ କଥାକୁ କ'ଣ ଏପରି ଧରୁଛନ୍ତି ? ବାପା କହିଲେ - ବାବୁ ଛୋଟ ଛୋଟ କଥା ହିଁ ବଢ଼ି ବଢ଼ି ବଡ଼ ଆକାର ଧାରଣ କରେ, ଯାହା ଆୟତ ବାହାରକୁ ଚାଲିଯାଏ । ଆଦିବାସୀ ଯୁବକଟିଏ ଜଙ୍ଗଲକୁ କାଠ ହାଣିବାକୁ ଯାଏ, ବିଡ଼ି ଖାଇ ଅବଶେଷ ଝୁଲ ଟିକକ ଫିଙ୍ଗିଦେଲେ, ତାହା ଶୁଖିଲା ପତ୍ରରେ ପଡ଼ି କୁହୁଳି କୁହୁଳି ସମୁଦାୟ ଜଙ୍ଗଲକୁ ପୋଡ଼ି ଦିଏ । ତେଣୁ କୌଣସି କଥାକୁ ଛୋଟ ଭାବିବା ଉଚିତ

ନୁହେଁ । ତୁମେ ଦୁଇଟି ଜୀବନକୁ ଯୋଡ଼ି ଦାମ୍ପତ୍ୟ ଆଶ୍ରମରେ ଚାରାଗଛଟିଏ ଲଗାଇଛ । ତାକୁ ମାରି ଦିଅ ନାହିଁ । ବଞ୍ଚାଇ ରଖିଲେ, ଜୀବନରେ ଯଶ ପାଇବ । କୋହ ଓ ଭାବାବେଶରେ ବାପାଙ୍କର କଣ୍ଠରୋଧ .... ।

ଏପଟେ ପ୍ରସେନ୍‌ଜିତ୍‌ଙ୍କ ବଡ଼ ସଢୁ ଯେ କି ଭୀଷ୍ମଗିରିରେ ରହନ୍ତି, ତାଙ୍କୁ ଫୋନ୍ କରି କହିଲେ - ବାବୁ, ଆପଣ ଥରେ ଆସି ଗୀତା ଓ ଜିତ୍ ମଧ୍ୟରେ ଘଟିଥିବା ବ୍ୟବଧାନକୁ ଦୂର କରିବା ପାଇଁ ଉଦ୍ୟମ କରି ଯାଆନ୍ତୁ । ସେ ଭଦ୍ରଲୋକ ଯୋଗୁଁ ସେ ଦୁହିଁଙ୍କ ମଧ୍ୟରେ ବ୍ୟବଧାନ ସୃଷ୍ଟି ହୋଇଛି । ତାହାର ସମାଧାନ ଅତି ଜରୁରୀ ।

ବଡ଼ ଭେଣୋଇ ଥରେ ଆସି ଗୀତାଙ୍କୁ କହିଗଲେ - ସ୍ୱାମୀ ଆଗରେ ତାଙ୍କର ବାପା ବୋଉଙ୍କ ବିଷୟରେ ଆଲୋଚନା କରିବୁ ନାହିଁ କି ଯୁକ୍ତି କରିବୁ ନାହିଁ । ସ୍ୱାମୀ ଯାହା ଚାହୁଁ ନାହାନ୍ତି, ସେପରି କାମ ବା କଥା କରିବୁ ନାହିଁ । ସ୍ୱାମୀ ପାଖରେ କୌଣସି କଥାରେ ଜିଦ୍ କରିବୁ ନାହିଁ । ଏହି ସବୁ କଥାକୁ ଜଗି ଚଳିବୁ ।' ଏହି ଉପଦେଶ କିଛି ଦିନ କାମ ଦେଲା । ମାତ୍ର ପୂର୍ବବତ୍ ପୁଣି ସେ ଭଦ୍ରଲୋକ, ନବ ଦମ୍ପତିଙ୍କ ଯୁଗ୍ମ ଜୀବନ ଦିଗ୍‌ବଳୟରେ ଆବିର୍ଭୂତ.... ।

ସେ ବାରମ୍ବାର ଆସିଲା । ପୁଣି ସମ୍ପର୍କ ରଖିଲା । ଯାହା ପ୍ରସେନ୍‌ଜିତ୍‌ଙ୍କ ପ୍ରତି ଅସହ୍ୟ ହେଲା । ସେ ଉଚ୍ଚ ରକ୍ତଚାପରେ ଆକ୍ରାନ୍ତ ହେଲେ । ଏଥିପାଇଁ ଔଷଧ ବ୍ୟବହାର କଲେ । ମାତ୍ର ସେଥିପ୍ରତି ରୀତିମତ ସତର୍କତା ଅବଲମ୍ବନ କରି ପାରିଲେ ନାହିଁ । ଭଦ୍ରଲୋକର ଦର୍ଶନ ମାତ୍ରେ ତାଙ୍କର ମୁଣ୍ଡକୁ କ୍ରୋଧ ଓ ଦୁଶ୍ଚିନ୍ତା ଉଠିଯାଏ । ଏ କଥା ଅଧ୍ୟାପିକା ପତ୍ନୀ ବୁଝିବାକୁ ନାରାଜ୍ । 'ଜିତ୍ ଏତେ ମିନ୍' । ସେ ପ୍ରଦୋଷ ସାର୍‌ଙ୍କ ଆସିବାକୁ କାହିଁକି ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି ? ସେ କେତେ ଭଲ ଲୋକ । ତାଙ୍କୁ କାହିଁକି ଭିନ୍ନ ଦୃଷ୍ଟିରେ ଦେଖୁଛନ୍ତି ? ଏ ତ ମନ ଗହନର କଥା । ଥରେ ମନ ଗହନରେ 'ବିଡ଼ିର ଝୁଲ' ପଡ଼ିଗଲେ, ତାହା ଦାବାନଳରେ ପରିଣତ ହୁଏ । ଏହା ହିଁ ତ 'ସ୍ଲୋ କମ୍ବୋସନ୍' । ଏ କଥା ଗୀତା କିପରି ବୁଝୁ ପାରୁ ନାହାନ୍ତି ? ପୁଣି 'ସାଇକୋଲଜି' ଅଧ୍ୟାପିକା ହୋଇ !

ଏଇଥିପାଇଁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଝଗଡ଼ା ଲାଗି ଅଧ୍ୟାପିକା ପତ୍ନୀଙ୍କୁ ଦୁଇଥର ହାତ ଉଠାଇଛନ୍ତି ଜିତ୍ । ଥରେ ବେଲ୍ଟରେ ପିଟିଛନ୍ତି - ଗୀତାଙ୍କ ଅଭିଯୋଗ । ପ୍ରସେନ୍‌ଜିତ୍ ସ୍ୱାମୀ ପଣିଆ ଜାହିର କରିବାକୁ ଯାଇ ଏ ଯେଉଁ କଠୋର ପନ୍ଥା ଅବଲମ୍ବନ କଲେ, ତାହା ତାଙ୍କ ପାଇଁ ଭବିଷ୍ୟତରେ ବହୁତ ମହଙ୍ଗା ପଡ଼ିଲା । ଗୀତା ଚାହିଁଲେ, ଜିତ୍‌ଙ୍କୁ ପୂରାପୂରି କାବୁକରି ନିଜ ପଣତ କାନିରେ ବାନ୍ଧି ରଖିବା ପାଇଁ ଠିକ୍ ଗୋଟିଏ

ପୋଷା ଆଲ୍‌ସିଆନ୍ ପରି । ସେ ପ୍ରତି କଥାରେ ପ୍ରସେନ୍‌ଜିତ୍‌ଙ୍କୁ ସ୍ନବ୍ ଓ ବ୍ଲାକ୍‌ମେଲିଂ କଲେ । ତାଙ୍କ ପୌରୁଷ ଉପରେ ଆକ୍ଷେପ କଲେ । ପ୍ରସେନ୍‌ଜିତ୍ ମାନସିକ ଦୃଷ୍ଟିରୁ ଏତେ ଦୁର୍ବଳ ହୋଇଗଲେ ଯେ, ସେ ଗୀତାଙ୍କ ନିକଟରୁ ଦୂରେଇ ରହିବାକୁ ଚାହିଁଲେ । ସ୍ୱାମୀ ସ୍ତ୍ରୀ ମଧ୍ୟରେ କଥାବାର୍ତ୍ତା ଅତି ସୀମିତ । ଗୀତା ପ୍ରସେନ୍‌ଜିତ୍‌ଙ୍କୁ ଆଘାତ ଦେବାକୁ କହିଲେ – ତୁମେ ପାଞ୍ଚ ହଜାର ଟଙ୍କାକୁ ଯୋଗ୍ୟ ନୁହଁ, ମୋର ଭାଇମାନେ ଲକ୍ଷ ଲକ୍ଷ ଟଙ୍କା ଦେଲେ । ମୁଁ କ'ଣ ନ ଆଣିଛି ? ସେ ତୁଳନାରେ ତୁମେ କ'ଣ ? ତୁମଠି ମରଦ ପଣିଆ ଅଛି ? ମୁଁ କ'ଣ ଖାଲି ରୋଷେଇ କରି ଦେବାକୁ ବାହା ହୋଇଥିଲି ? ଯଦି ବାବାଜୀ ହେବାକୁ ଇଚ୍ଛା ଥିଲା, ମୋତେ ବାହା ହେଉଥିଲ କାହିଁକି ? ପ୍ରସେନ୍‌ଜିତ୍ ଏହାର ଉତ୍ତରରେ କହନ୍ତି – ମୁଁ ତ ବିଭା ହେବାକୁ ଚାହୁଁ ନଥିଲି । ତୁମ ପକ୍ଷରୁ ମୋ ବାପା ବୋଉଙ୍କ ଉପରେ ସେ ଭଦ୍ର ଲୋକ ଦ୍ୱାରା ପ୍ରେସର୍ ପକାଇ ମୋତେ ବାହା ହେବାକୁ ବାଧ୍ୟ କଲ । ଅଥଚ ମୋ ମନ ଓ ଆତ୍ମାକୁ ଚିହ୍ନିବାକୁ ଚେଷ୍ଟା କଲ ନାହିଁ । ତମେ ତ ଗ୍ରସ୍ ଶରୀର ସ୍ତରରେ ରହିଗଲ ଏବଂ ରହିବାକୁ ଚାହୁଁଛ । ମୁଁ କିନ୍ତୁ....

ଗୀତା ଉତ୍ତେଜିତ ହୋଇ କହନ୍ତି – ଭାରୀ ପାରିବାର ମରଦ ତ ! ପ୍ରସେନ୍‌ଜିତ୍ ଆଉ ଯୁକ୍ତି କରି ପାରନ୍ତି ନାହିଁ । ବାସ୍ତବିକ ହୀନମନ୍ୟତା ଓ ଘୃଣାର ଏକ କଳା ବାଦଲ୍ ତାଙ୍କ ମୁଣ୍ଡ ଉପରେ ଚରି ବୁଲେ । ମାତ୍ର ଅନ୍ତଃକରଣରେ ଦାବାଗ୍ନିର ଲେଲିହାନ୍ ଶିଖା । ତାଙ୍କୁ କ୍ରମେ କ୍ରମେ ଅବଶ କରିଦିଏ । ସେ ନିଷ୍କ୍ରିୟ ହୋଇ ପଡ଼ନ୍ତି । କାହିଁକି ବିବାହ କଲେ, ଏପରି ଏକ ଜାନୁଆର୍ ନାରୀକୁ ? ଭାଗ୍ୟକୁ ଧିକ୍କାର କରନ୍ତି । ବାପା ବୋଉ ତ ଭଲ ପାଇଁ ବିବାହ କରିଥିଲେ । ଏପରି ଓଲଟା ଫଳ ଫଳିବ ବୋଲି କ'ଣ ସେମାନେ ଜାଣିଥିଲେ ? କେଉଁ ବାପମାଆ ପୁଅ ଝିଅଙ୍କର କଲ୍ୟାଣ ଚାହାନ୍ତି ନାହିଁ ?

ଯେଉଁ ଗୀତା ବିବାହ ବୟସ ଗଡ଼ି ଯାଉଥିବାରୁ ହଜାର ଖୁସାମତ କରି ପ୍ରସେନ୍‌ଜିତ୍‌ଙ୍କ ପାଦ ସ୍ପର୍ଶ କରି ବିବାହ ପୂର୍ବରୁ ପ୍ରଣିପାତ କରୁଥିଲା, ସେ ପୁଣି ବିବାହର କିଛି ଦିନ ପରେ ତାଙ୍କ କାନ୍ଧରେ ଦୁଇ ଗୋଡ଼ ରଖି କିପରି ଲାଗୁଛି ବୋଲି ପଚାରିଥିଲା । ପ୍ରସେନ୍‌ଜିତ୍ କହିଥିଲେ – ହଁ, ଆଉ କ'ଣ ଲାଗିବ ? ସୁଧାରିଆ କୃଷ୍ଣସାର ଉପରେ ସିଂହୀର ଏ ଥିଲା, ପ୍ରଥମ ଔଦ୍ଧତ୍ୟ ଓ ପୈଶାଚିକ ପରୀକ୍ଷା । ଭଦ୍ର ଓ ନମ୍ର ପ୍ରସେନ୍‌ଜିତ୍ ପ୍ରଥମେ ଏହାକୁ ହାଲୁକା ଭାବେ ନେଇଥିଲେ । ସେ ଭାବିଥିଲେ, ସମ୍ଭବତଃ ଏହା ହିଁ ନବ ବିବାହିତ ସ୍ତ୍ରୀର ସ୍ୱାମୀ ପ୍ରତି ପ୍ରଥମ ଅନୁରାଗଭରା ଅଭିବାଦନ !

ଗୀତା ଆଉଥରେ ପିଆଜି, ବରା, ପକଡ଼ି ଛାଣି ରାତିରେ ସେ ଭଦ୍ର ଲୋକ ଘରକୁ ପ୍ରସେନ୍‌ଜିତ୍‌ଙ୍କ ହାତରେ ପଠାଇଲେ । ଘୃଣା ଓ ଅନିଚ୍ଛା ସତ୍ତ୍ୱେ ପ୍ରସେନ୍‌ଜିତ୍ ସେତକ ନେଇ ଦେଇ ଆସିଥିଲେ । ମାତ୍ର ତାଙ୍କର ରକ୍ତ ଚାପ ବଢ଼ିଯାଇଥିଲା ।

ପରଦିନ ଡାକ୍ତରଙ୍କ ପାଖକୁ ଯାଇ ଔଷଧ ବ୍ୟବହାର କରିଥିଲେ ବ୍ଲଡ଼ ପ୍ରେସରକୁ ନର୍ମାଲ ଅବସ୍ଥାକୁ ଆଣିବା ପାଇଁ ।

ଗୀତା ଜିତ୍‌ଙ୍କ ଅପେକ୍ଷା ମେଦବହୁଳା । ଉଚ୍ଚତାରେ ପ୍ରସେନ୍‌ଜିତ୍ ଗୀତାଙ୍କ ଅପେକ୍ଷା ଦୁଇ ତିନି ଇଞ୍ଚ ଅଧିକ । ମାତ୍ର ଓଜନ ଓ ସ୍ଥୁଳତାରେ ଗୀତା ପ୍ରସେନ୍‌ଜିତ୍‌ଙ୍କ ଅପେକ୍ଷା ଅଧିକ । ତେଣୁ ସମାନ ସ୍ତରକୁ ଆଣିବା ପାଇଁ ଗୀତା ପ୍ରତିଦିନ ପ୍ରଚୁର ମାଛ ମାଂସ ଜିତ୍‌ଙ୍କୁ ଖୁଆଇଲେ ବଳାଇ ବଳାଇ । ମାନସିକ ସ୍ତରରେ ଅନୈକ୍ୟଥିଲେ ବି ଶାରୀରିକ ଦୃଷ୍ଟିରୁ ସ୍ତ୍ରୀ ଅପେକ୍ଷା ସ୍ୱାମୀ ଉଚ୍ଚତା ଓ ସ୍ଥୁଳତାରେ ସମ୍ୟକ୍ ଅଧିକ ହେବା ସୁନ୍ଦର । ଜିତ୍‌ଙ୍କର ଶରୀରରେ ଚର୍ବି ଜମିଗଲା ।

ସେ ପୂର୍ବାପେକ୍ଷା ମୋଟା ହୋଇଗଲେ । ଥରେ ଛୁଟିରେ ଆସିଥିଲେ । ବାପା ପୁଅର ଚର୍ବି ବହୁଳ ବିପୁଳ ବପୁ ଦେଖି କହିଲେ – ଆରେ ପେଟରୁ ଚର୍ବି କମା, ନଚେତ୍ କେତେ ବେଳେ ହାର୍ଟ ପ୍ରୋବ୍ଲେମ୍'ର ସମ୍ମୁଖୀନ ହେବୁ । ପ୍ରସେନ୍‌ଜିତ୍ ନୀରବରେ କିଛି ସମୟ ଇତସ୍ତତଃ ବାପାଙ୍କ ଆଡ଼କୁ ଚାହିଁଥିଲେ ।

ଚର୍ବି ବହୁଳ ପୃଥୁଳ କାୟ ହୋଇଯିବାରୁ ପ୍ରସେନ୍‌ଜିତ୍‌ଙ୍କର ଗତିଶୀଳତା କମିଗଲା । ସେ ବସି ରହିବାକୁ କିମ୍ବା ବିଛଣାରେ ପଡ଼ି ରହି ଟିଭି ସିରିଅଲ୍ ଦେଖିବାକୁ ପସନ୍ଦ କଲେ । ଉପର ଅଧିକାରୀ ତାଙ୍କୁ କୌଣସି ଫିଲଡ଼୍ କାମ ନ ଦେଇ ଅଫିସ୍‌ରେ ବସାଇ ରଖିଲେ । କାରଣ ପ୍ରସେନ୍‌ଜିତ୍ ଦୋନମ୍ବରୀ କାମ କରିବାକୁ ପରାଙ୍ମୁଖ । ଦୁଇ ଦୁଇ ମିଶିଲେ ପାଞ୍ଚ ହେବ, ଏ ବିଦ୍ୟା ପ୍ରସେନ୍‌ଜିତ୍ ଜାଣନ୍ତି ନାହିଁ । ଦୁଇ ଦୁଇ ମିଶି ଚାରି ଏତକ ସେ ପ୍ରଥମ ଶ୍ରେଣୀରୁ ପଢ଼ିଛନ୍ତି । କିନ୍ତୁ ସରକାରୀ କଳରେ ଏ ହିସାବ ଚଳେ ନାହିଁ ବୋଲି ଯେତେ କହିଲେ ମଧ୍ୟ ସେ ଗ୍ରହଣ କରିବେ ନାହିଁ । ସାଙ୍ଗ ସାଥୀ, ଅଫିସ୍ ଓ ଫିଲଡ଼୍ କର୍ମଚାରୀ କହନ୍ତି – ୟାଙ୍କୁ ଜେ.ଏ.ଓ. କିଏ କଲା ? ବରଂ ଶିକ୍ଷକ କି ଅଧ୍ୟାପକଟିଏ ହୋଇଥିଲେ ଖୁବ୍ ନାମ କରିଥାନ୍ତେ ଓ ସମାଜ ଉପକୃତ ହୋଇଥାନ୍ତା । କୌଣସି ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍‌ରେ ଇନ୍‌ଷ୍ଟ୍ରକ୍ଟର୍ ହେଲେ ଭଲ ହୁଅନ୍ତା । ପ୍ରସେନ୍‌ଜିତ୍ ବି ସେଥିପାଇଁ କେତେଥର ଚେଷ୍ଟା କରିଛନ୍ତି । ମାତ୍ର ବିନା ବଟିରେ କ'ଣ କିଛି କାମ ହୁଏ ? ଏଇଥିପାଇଁ ସେ ନକ୍ସଲ ପ୍ରବଣ ଆଦିବାସୀ ଅଧ୍ୟୁଷିତ ମ୍ୟାଲେରିଆ ପ୍ରପୀଡ଼ିତ ଅଞ୍ଚଳରେ ପଡ଼ିଛନ୍ତି ।

ଯେତେ ଦରଖାସ୍ତ ଦେଇ ଧରାଧରି କଲେ ବି, ନିଜ ଅଞ୍ଚଳକୁ ଆସିପାରୁ ନାହାନ୍ତି । ବରଂ କେବିକେ ଅଞ୍ଚଳ ତାଙ୍କ ପାଇଁ ଭଲ । ଏଠାରେ କାମ କଲେ କେତେ, ନ କଲେ କେତେ ଦେଖିବାକୁ କିଏ ଅଛି ? କଟକ, ପୁରୀ, ବାଲେଶ୍ୱର କି

ଗଞ୍ଜାମ ଜିଲ୍ଲାରେ ପୋଷ୍ଟିଂ ହେଲେ ୱାର୍ଡମେମ୍ବରଠୁ ଏମ୍.ଏଲ୍.ଏ. ପର୍ଯ୍ୟନ୍ତ ସମସ୍ତଙ୍କର ଆଖି ଜେ.ଏ.ଓ. ଉପରେ । କ୍ଷେତ୍ର ଉପରୁ ଦିନେ ଅନୁପସ୍ଥିତ ରହିଲେ କି କେହି ଖୋଜିଲେ ଯଦି ନ ମିଳିଲେ, ସାଙ୍ଗେ ସାଙ୍ଗେ ମନ୍ତ୍ରୀଙ୍କ ପାଖରେ ଅଭିଯୋଗ ପହଞ୍ଚିଯିବ । ଏଠାରେ କିଏ ଦେଖିବାକୁ ଅଛି ?

ତେବେ ପ୍ରସେନ୍‌ଜିତ୍ ଏକ ବିରୋଧାଭାଷ ମଧ୍ୟ ଦେଇ ଗତି କରୁଛନ୍ତି । ନବ ବିବାହିତା ପତ୍ନୀ ମାନସିକ ସ୍ତରରେ ତାଙ୍କୁ ନିର୍ଯ୍ୟାତନା ଦେଲେ ବି ତାଙ୍କର ଶାରୀରିକ ଅଭିବୃଦ୍ଧି ପାଇଁ ଖୁବ୍ ଯତ୍ନଶୀଳା । ସେ ଭଦ୍ର ମହିଳା ବୁଝୁ ନାହାନ୍ତି, ଶାରୀରିକ ଅଭିବୃଦ୍ଧି ସାଙ୍ଗକୁ ମାନସିକ ପ୍ରଶାନ୍ତି ଓ ପ୍ରସନ୍ନତା ନ ରହିଲେ, ତାଙ୍କର ଯୁବ ସ୍ୱାମୀ ଯେ ରକ୍ତଚାପ ଓ ହୃଦକ୍ରିୟା ଜନିତ ରୋଗରେ ଆକ୍ରାନ୍ତ ହୋଇ ପାରନ୍ତି । ଏ ଧାରଣା ସମାନ୍ୟତମ ତାଙ୍କର ନଥିଲା । ତାଙ୍କ ଅହମିକାକୁ ଆଘାତ ଦେଲେ ସେ କାହାରି ନୁହନ୍ତି । ସେ ସ୍ୱାମୀ ହୁଅନ୍ତୁ, ଶାଶୁ କି ଶଶୁର, ଯେ କେହି ହୁଅନ୍ତୁ । ଯେଷାକୁ ତେଷା ଟିଟ୍ ଫର ଟାଟ୍ - ଏତିକି ସେ ଜାଣନ୍ତି ତାଙ୍କର କଲେଜ ଶିକ୍ଷାରୁ ।

ବାସ୍ତବିକ ଆଧୁନିକ ଶିକ୍ଷା ମଣିଷକୁ ସ୍ୱାର୍ଥ କୈନ୍ଦ୍ରିକ କରି ଦେଉଛି । ଏଥିରେ ନିଜ ପାଇଁ ମଣିଷ ବଞ୍ଚେ ବୋଲି ଶିକ୍ଷା ମିଳୁଛି । କିନ୍ତୁ ଆମର ପରମ୍ପରା ଅନ୍ୟ ପାଇଁ ବ୍ୟକ୍ତି ବଞ୍ଚେ ବୋଲି ପ୍ରେରଣା ଦେଇ ଆସିଛି । ସେମିତି ଏକ ଏକାନ୍ନବର୍ତ୍ତୀ ଯୌଥ ପରିବାରରେ ପ୍ରସେନ୍‌ଜିତ୍ ଜନ୍ମ ନେଇ ବଢ଼ିଛନ୍ତି, ମଣିଷ ହୋଇଛନ୍ତି । ମାତ୍ର ତାଙ୍କର ସ୍ତ୍ରୀ ଠିକ୍ ଓଲଟା । ନବ ବିବାହିତା ପତ୍ନୀ ଗୀତା ଜାଣନ୍ତି, ସେ ପ୍ରସେନ୍‌ଜିତ୍‌କୁ ବାହା ହୋଇଛନ୍ତି, ତାଙ୍କର ଗୋଟାପଣ କରିବା ପାଇଁ । ସେ ଚବିଶ ଘଣ୍ଟା ତାଙ୍କ ପାଖରେ ମିଳିବେ, ବସିବେ, ମିଶିବେ । ଗପ କରିବେ, ତାଙ୍କରି କେବଳ ପ୍ରଶଂସା କରିବେ । ପ୍ରସେନ୍‌ଜିତ୍ କିନ୍ତୁ ଏଥିରେ ଅଭ୍ୟସ୍ତ ନୁହନ୍ତି ।

ଦଶହରା ଛୁଟିରେ ଘରକୁ ଆସିଲେ ପ୍ରସେନ୍‌ଜିତ୍ ବାପାଙ୍କ ପାଖରେ ବସି ଚଳିତ ସମୟର ସମସ୍ୟା, ଆଧ୍ୟାତ୍ମିକ ସାହିତ୍ୟ ଉପରେ ଆଲୋଚନା କରନ୍ତି । ବାପାଙ୍କ ସାଙ୍ଗରେ ବିଭିନ୍ନ ସଭା ସମିତି, ଆଲୋଚନା ଚକ୍ରକୁ ଯାଆନ୍ତି । ଆଲୋଚନା ଶେଷରେ ପ୍ରସାଦ ସେବନ କରନ୍ତି । ଏଣେ ଗୀତା ଘରେ ଏକୁଟିଆ ବସି ବସି ବିଜାର । କୁଆଡ଼େ ଗଲେ ଜିତ୍ । ଆଜି ଫେରିଲେ ପାନେ ଦେବି ।

ପ୍ରସେନ୍‌ଜିତ୍ ଶ୍ରଦ୍ଧାରେ ଦୋସା, ଆଇସ୍‌କ୍ରିମ୍ ଆଣନ୍ତି । ଗୀତା ଖାଇବାକୁ ଭଲ ପାଆନ୍ତି ବୋଲି । ଥରେ ଅପରାହ୍ଣରେ ଗୀତାଙ୍କ ପାଇଁ ଚାର୍ଟ ନେଇ ଆସିଲେ । ଗୀତା କିନ୍ତୁ ଖାଇବାକୁ ମନା କଲେ । 'ମୁଁ ଖାଇବି ନାହିଁ' । 'କାହିଁକି ଖାଇବ ନାହିଁ ?'

କାରଣ କ'ଣ ଜାଣିବାକୁ ଚାହିଁଲେ ପ୍ରସେନ୍‌ଜିତ୍ । କାରଣ ଫାରଣ ମୁଁ କହି ପାରିବି ନାହିଁ । କହିଲି ତ ମୁଁ ଖାଇବି ନାହିଁ । କେତେ ଶ୍ରଦ୍ଧାରେ ଚାର୍ଟ ଆଣିଥିଲେ ପ୍ରସେନ୍‌ଜିତ୍ । ଗୀତା ପ୍ରତ୍ୟାଖ୍ୟାନ କରିବାରୁ ଜିତ୍ ରାଗିଗଲେ । ସମସ୍ତଙ୍କ ଉପସ୍ଥିତିରେ କହିଲେ - କ'ଣ, ମୁଁ ଆଣିଲି ବୋଲି ଖାଇବ ନାହିଁ; ମାତ୍ର ପ୍ରଦୋଶ ଭାଇ ଆଣିଥିଲେ ତ ଖୁବ୍ ଆଦରରେ ଖାଇଥାନ୍ତ । ଏତକ କହି ଚାର୍ଟ ପ୍ୟାକେଟ୍‌କୁ ଗୀତାଙ୍କ ଉପରକୁ ଫିଙ୍ଗି ଦେଲେ । ଗୀତା ରାଗରେ କ'ଣ କହି କହି ତଳ ମହଲାକୁ ଦୌଡ଼ି ପଳାଇଲେ ଓ ଭିତରୁ କବାଟ କିଳି ଦେଲେ । ଶାଶୁ ଓ ନଣନ୍ଦ ବ୍ୟତିବ୍ୟସ୍ତ ହୋଇଗଲେ । କାଳେ କ'ଣ କରି ବସିବ । ଶାଶୁ ନିଜେ ଯାଇ ବହୁତ ବୁଝାଇଲେ - କେତେ ଶ୍ରଦ୍ଧାରେ ଜିତ୍ ଚାଟ୍ ଆଣିଥିଲା, ତୁ ଖାଇବାକୁ କାହିଁକି ମନା କଲୁ । ଗୀତା, ମୋ ମାଆଟା ପରା, କବାଟ ଫିଟା । ତୋର କ'ଣ ହୋଇଛି ? କାହିଁକି ତୁ ଜିତ୍‌କୁ ଗ୍ରହଣ କରି ପାରୁ ନାହୁଁ ? ସେ କ'ଣ ଭୁଲ୍ କରିଛି ? ବହୁ ବୁଝା ବୁଝି କଲାପରେ ଗୀତା କବାଟ ଖୋଲିଲେ । କହିଲେ - ମୁଁ ଏ ଘରେ ଖାଇବି ନାହିଁ । ମୋ ପଇସାରେ କିଣି କରି ଆଣିଲେ ଖାଇବି, ନ ହେଲେ ମୁଁ ଉପାସ ରହିବି । କି ଅବୁଝାବଣା କଥା । 'ମୋ ପଇସା' କହିଲେ, କ'ଣ ବୁଝାଏ ? ସ୍ୱାମୀର ପଇସା ତ ସ୍ତ୍ରୀର ପଇସା । ସ୍ତ୍ରୀର ସଞ୍ଚୟ ତ ସ୍ୱାମୀର ବି ।

ଶଶୁର କୁଆଡ଼େ ବାହାରକୁ ବୁଲି ଯାଇଥିଲେ । ଫେରି ଶାଶୁଙ୍କଠାରୁ ଶୁଣିଲେ । କିନ୍ତୁ ଶାଶୁ ସବୁ କଥା ଖୋଲି କହିଲେ ନାହିଁ । କାଳେ ପୁଣି କ'ଣ ଅଘଟଣ ଘଟିଯିବ । ... ଶାଶୁ, ଶଶୁର ବହୁତ ଚିନ୍ତିତ ରହିଲେ । ଗୀତାଙ୍କ ଏପରି ଅପ୍ରତ୍ୟାଶିତ ବ୍ୟବହାରରେ ପ୍ରସେନ୍‌ଜିତ୍ ଭାଙ୍ଗି ପଡ଼ିଲେ । ବିଭା ତ ହୋଇଛନ୍ତି । କାହାକୁ କହିବେ ? ବାପା ମାଆଙ୍କୁ କ'ଣ ବା ଦୋଷ ଦେବେ ? ସେମାନେ କ'ଣ ଗୀତାଙ୍କର ଭିତର ରୂପ ଦେଖିଥିଲେ କି ଜାଣିଥିଲେ ? ସେ ତ ଚାକିରି କ୍ଷେତ୍ରରେ ରହି ଗୀତାଙ୍କ ସମ୍ପର୍କରେ ବିବାହ ପୂର୍ବରୁ ଭଲ ଛଡ଼ା ମନ୍ଦ ଶୁଣି ନଥିଲେ ।

ହଁ, ବିବାହ ପରେ ଦୁଷ୍ମନ୍ତପୁରର ଜଣେ ଶିକ୍ଷକ ଅଧାପିକା ଗୀତାଙ୍କର ଚାଲିଚଳଣି, ଚରିତ୍ର ସମ୍ପର୍କରେ ପ୍ରସେନ୍‌ଜିତ୍‌ଙ୍କୁ କେତେ କଥା କହିଥିଲେ । ସେ କଥା ଶୁଣି ଛୁଟିରେ ଆସିଲା ସମୟରେ ଜିତ୍ ବାପାଙ୍କୁ କହିଲେ । ବାପା କହିଲେ - ଛାଡ଼, ସେ କଥାରେ ଗୁରୁତ୍ୱ ଦେ ନାହିଁ । ଏପରି ଅନେକ ଅସହିଷ୍ଣୁ ପରଶ୍ରୀକାତର ଲୋକ ଅଛନ୍ତି । ପରର ଭଲ ସହି ପାରନ୍ତି ନାହିଁ । ଅଯଥା କୁତ୍ସାରଟନା କରନ୍ତି । ସେ ଲୋକଟାକୁ ଦି ଚାପଡ଼ ଦେଲୁ ନାହିଁ ? ବିବାହ ସରିଲାପରେ ତୋ ସ୍ତ୍ରୀ ସମ୍ପର୍କରେ ଅଯଥା କଥା କହି ତୋ

ମନକୁ ବିଷାକ୍ତ କରିବା ତା'ର କି ଆବଶ୍ୟକତା ଥିଲା ? ସବୁ ଭୁଲି ଯାଆ । ଆ...,
ଯିବା । ମନ୍ଦିର ଯାଇ ଠାକୁର ଦର୍ଶନ କରି ଆସିବା ।

ବେଳେବେଳେ ବାପା ପ୍ରସେନ୍‌ଜିତ୍‌ଙ୍କୁ ଉପଦେଶ ଦିଅନ୍ତି - ଆରେ ମୁଁ ଜଣେ ଓ.ଏ.ଏସ୍. ଅଫିସର୍ ଥିଲି । ତୁମେ ଦିହେଁ ମୋ ପରିଚୟ ଦେଇ ସ୍ଥାନୀୟ ତହସିଲ୍‌ଦାର, ବିଡ଼ିଓ, ଡାକ୍ତର, ଥାନା ଅଫିସର୍, କଲେଜ ପ୍ରିନ୍ସିପାଲଙ୍କ ଘରକୁ ବୁଲି ଯାଉନା । ସେମାନଙ୍କ ସହିତ ମିଶିଲେ, ମନ ଭଲ ରହିବ । 'ସୋସିଆଲ୍ କଣ୍ଟାକ୍ଟ'ର ତ ପୁଣି ଗୋଟାଏ 'ହିଲିଂ ଏଫେକ୍ଟ' ଅଛି ?

ଯେତେ କହିଲେ ବି, କୁକୁର ଲାଙ୍ଗୁଳ ବଙ୍କା ପରି ଗୀତା କିନ୍ତୁ ପୂର୍ବବତ ଆଡ଼ାମେଣ୍ଟ୍ । ପ୍ରସେନ୍‌ଜିତ୍ ଚିନ୍ତିତ ହୋଇ ପଡ଼ିଲେ, ଏପରି ଅବୁଝା ସ୍ତ୍ରୀକୁ ଧରି ସେ କିପରି ଜୀବନ କଟାଇବେ ? କୃଷି ବିଭାଗ ଚାକିରି । କେତେ ଧନ୍ଦା କେତେ ସମସ୍ୟା । ଫିଲ୍‌ଡ଼ରୁ ଫେରି ସ୍ତ୍ରୀ ପାଖରୁ ଟିକିଏ ସ୍ନେହ, ଟିକିଏ ଆଶ୍ଳେଷ ପାଇବେ କ'ଣ; ଫଳ କିନ୍ତୁ ବିପରୀତ । ପ୍ରସେନ୍‌ଜିତ୍‌ଙ୍କର ଜୀବନ ପ୍ରତି ବିତୃଷ୍ଣା ଆସିଗଲା । କେବଳ ସେ ବଞ୍ଚିଛନ୍ତି ବାପା ବୋଉଙ୍କ ଯୋଗୁଁ । ବିଶେଷତଃ ବାପାଙ୍କ ଯୋଗୁଁ; ଯିଏ ବିପଦ ଆପଦରେ ମେରୁ ପରି ତାଙ୍କ ପାଖରେ ଠିଆ ହୋଇଛନ୍ତି । ତାଙ୍କୁ ସାନ୍ତ୍ୱନା, ଆଶ୍ୱାସନା ଦେଇଛନ୍ତି ।

ପୁଅ ବୋହୂ ଭଲରେ ଭଲ ବୁଝାମଣା ରଖି ଚଳନ୍ତୁ - ବାପାଙ୍କର କେତେ ଆଗ୍ରହ । ଦୁହିଁଙ୍କୁ ମଝିରେ ମଝିରେ ଚିଠି ଲେଖିଛନ୍ତି । ତହିଁରୁ ସେପ୍ଟେମ୍ବର ମାସରେ ଲେଖିଥିବା ତିନୋଟି ଚିଠି ପ୍ରସେନ୍‌ଜିତ୍ ତାଙ୍କ ହାଣ୍ଡବ୍ୟାଗ୍‌ରେ ରଖିଥାନ୍ତି ଓ ମଝିରେ ମଝିରେ ବାହାର କରି ପଢ଼ନ୍ତି । ତାଙ୍କ ଅଫିସ୍ ଠିକଣାରେ ପଠାଇଲେ କିଏ ଗାଏବ୍ କରି ଦେଇପାରେ, ତେଣୁ ଅଧ୍ୟାପିକା ବୋହୂର କଲେଜ ଠିକଣାରେ ହିଁ ବାପା ଚିଠି ଦିଅନ୍ତି । ଗୀତା ଚିଠି ଆଣି ପ୍ରସେନ୍‌ଜିତ୍‌ଙ୍କୁ ଦିଅନ୍ତି । ଦୁହେଁ ବସି ଚିଠି ପଢ଼ନ୍ତି । ପୁଅ ବୋହୂଙ୍କର ଭଲ ପାଇଁ ବାପା ହୃଦୟ କିପରି ବ୍ୟାକୁଳ, ସେ ଚିଠିରୁ ସ୍ୱତଃ ଜାଣି ହୁଏ । ବାପା କାହିଁକି ଲାଗି ଲାଗି ତିନୋଟି ଚିଠି ସେପ୍ଟେମ୍ବର ମାସରେ ଲେଖିଥିଲେ ? ସେ ଅନୁଭବ କରୁଥିଲେ, ଆଶଙ୍କା ବି କରୁଥିଲେ ପୁଅ ବୋହୂଙ୍କର ଦାମ୍ପତ୍ୟ ଜୀବନ ଭଲ ଚାଲୁ ନାହିଁ । ଆଗକୁ ବିପଦ... ।

ସେପ୍ଟେମ୍ବର ୮ ତାରିଖ ଚିଠିରେ ବୋହୂକୁ ଲକ୍ଷ୍ୟ କରି ବାପା ଲେଖିଥିଲେ :
କଲ୍ୟାଣମୟୀ ମା'...,

ମୋର ଦେହ ଭଲ ରହୁ ନାହିଁ ଏବଂ ଏ ପଟେ କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ତୁମ ଦହିଁଙ୍କ ପାଖକୁ ଯାଇ ପାରୁ ନାହିଁ । ପ୍ରସେନ୍‌ଜିତ୍‌ଠାରୁ ଶୁଣିଲି - ତା'ର ସର୍କଲ୍ ପ୍ରପର୍‌କୁ

ବଦଳି ହୋଇଛି । ଏତକ ଜାଣି ଆନନ୍ଦିତ ହେଲି । ତୁମ୍ଭେ ଦୁହେଁ ମିଳିମିଶି ନିଜର ଜୀବନ ଓ କ୍ୟାରିୟର୍ ଗଢ଼ - ଏହା ମୋର ଆନ୍ତରିକ ଇଚ୍ଛା ଓ ଆଶୀର୍ବାଦ । ଗୋଟିଏ କଥା କହିବି - ଜିତ୍ ଯେଉଁ କଥାକୁ ପସନ୍ଦ କରୁ ନାହିଁ, ସେ କଥାରୁ ଓହରି ଆସି ନିରାପଦ ଦୂରତାରେ ରହିବା କର୍ତ୍ତବ୍ୟ । ତା'ର ଚିକିତ୍ସା ବିଷୟ ତୁ ଜାଣୁ । ତା' ମନରେ ଏଡ୍ରେଇ ହେବା ଭଳି ଅଯଥା କାରଣରୁ ଚାପ ସୃଷ୍ଟି ହେଲେ, ତାହାର ଆରୋଗ୍ୟ ଲାଭ ଡେରି ହେବ କିମ୍ବା ଅସୁସ୍ଥତା ଆଗ୍ରାଭେଟ୍ କରିବ । ଅଲ୍ଟିମେଟ୍ଲି ତୁ ହିଁ ସଫର୍ କରିବୁ ତା' ସଫରିଂ ସହିତ । ଜିତ୍ ଟିକିଏ ସଉଦା କରୁ । ସାକିରିଗୁମାରେ ସେ ସବୁ ସଉଦା କରୁଥିଲା । ନିଜ କାମ ନିଜେ କରିବା ପାଇଁ ତୁ ତାକୁ ସହାୟତା କରିବୁ । ଅନ୍ୟ ଉପରେ ନିର୍ଭର କରି ପରମୁଖାପେକ୍ଷୀ ହେବା ଅନୁଚିତ । 'ୟୁ ସୁଡ୍ ନଟ୍ ରିମେନ୍ ଅନ୍‌ନେସେସାରିଲି ଓବ୍‌ଲାଇଜଡ୍ ଟୁ ଏନି ବଡ଼ି, ହୁଆଟ୍ ସୋ ଏଭର ଡିଅର ଅର ନିୟର ହି ଅର୍ ସି ମେ ବି ।' ମୁଁ ଚାହେଁ ତୁମ୍ଭେମାନେ ସ୍ୱାଧୀନ ଭାବେ ମିଳିମିଶି ଆଦର୍ଶ ଜୀବନ ଯାପନ କର । ତୋର ବିବାହ ପୂର୍ବ ଅବସ୍ଥା ଅଲଗା ଥିଲା । ବିବାହପରେ, ତୁମ୍ଭ ଦୁହିଁଙ୍କର ପ୍ରାଇଭାସି କେହି ହାମ୍ପର୍ କରିବା ଅନୁଚିତ । ମୁଁ ଦୁଃଖିତ ଏବଂ ଆଶ୍ଚର୍ଯ୍ୟ ହେଉଛି, ତୁମ ବିବାହର ଆଠ ମାସ ପରେ ମଧ୍ୟ ରୀତିମତ ଗୋଟାଏ ମଟର ସାଇକେଲ୍ ତୁମ ବାସ ଭବନରେ ରହୁଛି । ଏହା ତୁମ ପ୍ରାଇଭାସିରେ ଆଞ୍ଚ ଆଣୁଛି । ମୁଁ ବି ଏହାକୁ ଲାଇକ୍ କରୁ ନାହିଁ । ଖୋଲା ହୃଦୟରେ ଏତକ ଲେଖିଲି ।

ଏହା ଜିତ୍ ମନ ଉପରେ ଚାପ ସୃଷ୍ଟି କରୁଛି, ଯାହା ତାହାର ଆରୋଗ୍ୟ ହେବାରେ ବାଧକ ରୂପେ କାର୍ଯ୍ୟ କରୁଛି । ଆମ ସ୍ତର ଅଲଗା । ଉତ୍କଳ ଗୌରବ ମଧୁସୂଦନ ଦାସ କହୁଥିଲେ - ''ଆଲୋ ସଖୀ, ଆପଣା ମହତ ଆପେ ରଖି ।'' ଦଶହରା ଛୁଟିରେ ତୁମ୍ଭେ ଦୁହେଁ ଏଠାକୁ ଆସିବ । ତୋ ବଡ଼ଯାଆ ବି ଆସିବ । ତୁମେ ତିନି ଯାଆ ଏକାଠି ହେବା ଉଚିତ ମଝିରେ ମଝିରେ । ଫଳରେ ଆମ ପରିବାର ଭଲ ବୁଝାମଣା ରଖି ଚଳି ପାରିବା । ବୋଉ ଓ ମୁଁ ଆଉ କେତେ ଦିନ ? ତୁମ୍ଭେମାନେ ଉଚ୍ଚ ଶିକ୍ଷିତା । ଶିକ୍ଷାର ମର୍ଯ୍ୟାଦା ରଖିବା ଉଚିତ ।

ପଦ୍ମ ପତ୍ର ଉପରେ ଜଳପରି ଚଳି ଶିଖିବା ଉଚିତ । ଭଗବାନ୍ ତୁମ୍ଭମାନଙ୍କୁ ଭଲରେ ରଖନ୍ତୁ - ଏତିକି ପ୍ରାର୍ଥନା । ଶୁଭାକାଙ୍କ୍ଷୀ, ବାବା ।

ଏହି ପତ୍ର ଦେବାର ସପ୍ତାହକ ପରେ ବାପାଙ୍କ ମନ ବୁଝିଲା ନାହିଁ, ଆଉ ଖଣ୍ଡେ ଚିଠି ଲେଖିଲେ ଉଭୟ ପୁଅ ବୋହୂଙ୍କ ଉଦ୍ଦେଶ୍ୟରେ : କଲ୍ୟାଣୀୟ ଜିତ୍ / କଲ୍ୟାଣୀୟା ମା' ଗୀତା,

ମୋର ଆଗ ଚିଠି ପାଇଥିବ । ଜିତ୍, ତୁ ଜାଣୁ ମୁଁ ଜୀବନ ସାରା ଆଦିବାସୀ, ଦଳିତ, ପଛୁଆ ବର୍ଗର ଗରିବ ଲୋକଙ୍କ ପାଇଁ ଚିନ୍ତା କରିଛି, କାମ କରିଛି, ଖବର କାଗଜରେ ଲେଖା ଲେଖି ଜନ ଜାଗରଣ ସୃଷ୍ଟି କରିବାକୁ ଉଦ୍ୟମ କରିଛି । ଆଦିବାସୀମାନଙ୍କ ଦୁଃଖ, ଅର୍ଥନୈତିକ ଦୁର୍ଦ୍ଦଶା ସମ୍ପର୍କରେ ଗବେଷଣା କରି ଚାଲିଛି । ଓଡ଼ିଶା ଓ ଓଡ଼ିଶା ବାହାରେ, ଏପରିକି ଆମେରିକାରେ ମୋତେ ଓଡ଼ିଆମାନେ ଜାଣନ୍ତି, ଜଣେ ଲେଖକ ଭାବରେ, ଜଣେ ଖାଣ୍ଟି ଓଡ଼ିଆ ଭାବରେ । ଏ ସବୁ ଲେଖିବାର ଉଦ୍ଦେଶ୍ୟ ହେଉଛି, ଆଦିବାସୀ ଛାତ୍ର ଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ମଧ୍ୟାହ୍ନ ଭୋଜନ ଚାଉଳ, ଡାଲି 'ସେ' ଆଣି ତୁମ୍ଭମାନଙ୍କୁ ଦେଉଛି ଏବଂ ତୁମ୍ଭେମାନେ ତାକୁ ଖାଉଛ ?

ଗରିବ ପିଲାଙ୍କ ମୁହଁରୁ ଛଡ଼ାଇ ଅଣା ଯାଇଥିବା ଚାଉଳ, ଡାଲି ବ୍ୟବହାର କଲେ ପାପ ଏବଂ ମଣିଷର ନିମ୍ନଗତି ହୁଏ – ଏହାର ମୋର ମତ ଓ ବିଶ୍ୱାସ । ସେ ଏକା ନୁହେଁ, ସେ ଅଞ୍ଚଳରେ ଚାକିରି କରୁଥିବା ଅଧିକାଂଶ, କହିବାକୁ ଗଲେ ୯୦/୯୫ ଭାଗ ଏହି ଦୁଷ୍କର୍ମରେ ଲିପ୍ତ । ତୁମ୍ଭେମାନେ ମୋର ପୁଅ ବୋହୂ ହୋଇ ଏପରି ପାପରେ ଭାଗୀ ହୁଅ ନାହିଁ । ହେଲେ, ମୋ ମନରେ ବହୁତ ଆଘାତ ଲାଗିବ ଓ ଆବଶ୍ୟକ ହେଲେ ମୁଁ ଖାଇବା ଛାଡ଼ିଦେବି; ଏ କୁତ୍ସିତ ଘଟଣା ତୁମମାନଙ୍କ ଉପରେ ଲଦି ଦେବା ବନ୍ଦ ନ ହେବା ପର୍ଯ୍ୟନ୍ତ । ସେ ଲୋକ ଏମିତି ଥୋପ ପକାଉଛି, ଅଥଚ ମୋତେ ଫୋନ୍‌ରେ କହିଲା – ମୁଁ ସେ ବିଭା ଘରରେ ୫୦/୬୦ ହଜାର ଖର୍ଚ୍ଚ କରିଛି ? ସେ କାହିଁକି ୫୦/୬୦ ହଜାର ଟଙ୍କା ଖର୍ଚ୍ଚ କଲା ?? ଏହା ଶୁଣିବା ପରେ ମୁଁ ବହୁତ ମର୍ମାହତ ହୋଇଛି । ଏଥିପ୍ରତି ତୁମେ ଦୁହେଁ ଗୁରୁତ୍ୱ ଦେବ ।

ମୁଁ ବନ୍ଧୁ ସମ୍ପର୍କ ରଖିବାକୁ ମନା କରୁ ନାହିଁ । ମାତ୍ର ଯେଉଁ ସମ୍ପର୍କ ଆମ୍ଭର ଆତ୍ମୋନ୍ନତିରେ, ସାମାଜିକ ପ୍ରତିଷ୍ଠା ଓ ସମ୍ମାନରେ ଆଞ୍ଚ ଆଣେ, ତାହା ଅବିଳମ୍ୱେ ବର୍ଜନୀୟ । ମୋ ପରିବାର ଓ ମୋ ପିଲାମାନଙ୍କ ବଦ୍‌ନାମ୍ ନ ହେଉ । ଏଥିପ୍ରତି ଦୃଷ୍ଟି ଦେବ । ମୁଁ ସିଧା ସଳଖ ଫୋନ୍‌ରେ କିମ୍ବା ଚିଠି ଲେଖି ସେ ଲୋକକୁ ଏପରି ନକରିବା ପାଇଁ ମନା କରି ଦେଇ ପାରିବି, ମାତ୍ର ତୁମ୍ଭେମାନେ ଠିକ୍ ରହିଲେ, ମୋତେ ମୁହଁ ସାରିବାର ଆବଶ୍ୟକତା କ'ଣ ଅଛି ?

ମୁଁ ଏପେଟ ଭାଇ ଓ ଜିତୁ ପାଇଁ ବ୍ୟସ୍ତ ଅଛି । ମୋର ସାହିତ୍ୟିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ବ୍ୟସ୍ତତା ଲାଗି ରହିଛି । ସେଥିରୁ ମୁଁ ମୁକୁଳିଲେ, ତୁମ୍ଭ ପାଖକୁ ଯିବି । ହଁ, ଆଗାମୀ ୨୦ ତାରିଖରେ ବଡ଼ଭାଇକୁ ନେଇ ସମ୍ବଲପୁର ବିଶ୍ୱ ବିଦ୍ୟାଳୟ ଯିବି । ସେଠାରେ ସେ କିଛି ଦିନ ପାଇଁ ଚାକିରିରେ ଯୋଗଦେଇ, ପୁଣି ଛୁଟି ଆଣି ଫେରିବ । ଏପରି ଅନେକ ଜଞ୍ଜାଳ ମୋତେ ବାନ୍ଧି ରଖିଛି । ଚିଠି ସ୍ଥିର ମନରେ ପଢ଼ିବ ।

ଅଯଥା ମୋହ, ମାୟା ଛାଡ଼ । ଆଗକୁ ଚାହଁ । ଆଲୋକକୁ ଦେଖ । ଅନ୍ଧକାରକୁ ପଛ କରିଦିଅ; ଭୁଲିଯିବାକୁ ଚେଷ୍ଟା କର । ଆଜି ଏତିକି । ଶୁଭାକାଙ୍କ୍ଷୀ, ବାବା ।

ବାପା ତୃତୀୟ ଚିଠି ଲେଖିଥିଲେ ପୁଅ ବୋହୂଙ୍କୁ । ''କଲ୍ୟାଣୀୟ ଜିତ୍ / ମା' ଗୀତା, ମୋର ପୂର୍ବ ଚିଠି ପାଇଥିବ । ଜିତ୍ ତୋର ଆଦିବାସୀ ଅଞ୍ଚଳରେ ରହିବା ୭ ବର୍ଷ ୩ ମାସ ହୋଇଗଲା । ବର୍ତ୍ତମାନ ସେଠାରେ ରହଣି ମଧ୍ୟରେ ତୋର ମେଡ଼ିକାଲ ଲିଭ୍ ମଞ୍ଜୁର ହୋଇ ବକେୟା ଦରମା ମିଳିବା ଦିଗରେ ଉଦ୍ୟମ କରିବୁ । ହେଡ଼ କ୍ଲର୍କଙ୍କ ସହିତ ସୁସମ୍ପର୍କ ରଖିବୁ । ହେଡ୍ ଅଫିସ୍ ସହିତ ଯୋଗାଯୋଗ ରଖି ଏ କାର୍ଯ୍ୟ କିପରି ଶୀଘ୍ର ହେବ ଦୃଷ୍ଟି ଦେବୁ । ଆଠଟା ବାର୍ଷିକ ବର୍ଦ୍ଧିତ ଦରମା (ଆନୁଆଲ୍ ଇନ୍‌କ୍ରିମେଣ୍ଟ) ମଞ୍ଜୁର ହେବ । ସେ ଦିଗରେ ଚେଷ୍ଟା କରିବୁ । ଏହି ଇନ୍‌କ୍ରିମେଣ୍ଟ ହୋଇଗଲେ ତୋର ଦରମା ବଢ଼ିଯିବ ଏବଂ ସର୍ଭିସ୍ ରେଗୁଲାରାଇଜଡ୍ ହେବ । ତେଣୁ ଗୋଟିଏ ବର୍ଷ ମଧ୍ୟରେ ଏସବୁ ଯେପରି ହେବ, ଲକ୍ଷ୍ୟ ରଖିବୁ ।

ଫିଲ୍‌ଡ଼କୁ ଯିବୁ । ଗୀତାର ଛାତ୍ରମାନେ ଥିବେ । ସେମାନଙ୍କ ସାହାଯ୍ୟରେ ଓ ଗ୍ରାମସେବକମାନଙ୍କ ସହାୟତାରେ ତୋ ଦାୟିତ୍ୱରେ ଥିବା ଗ୍ରାମଗୁଡ଼ିକ ବୁଲି ଦେଖିବୁ । ମାସରେ ଅତିକମ୍‌ରେ ଦଶଟି ଗାଁ ଦେଖିବା ଉଚିତ । ଆଦିବାସୀ ଚାଷୀ କିଛି ଉପକାର ପାଆନ୍ତୁ ତୋ ଶିକ୍ଷା ଓ ଅଭିଜ୍ଞତାରୁ । ଗୀତାର ଉପସ୍ଥିତି ଏ ଦିଗରେ ଭଲ ପ୍ରଭାବ ଓ ଫଳ ଦେବ । ଦୁହେଁ ମିଳିମିଶି ସେ ଅଞ୍ଚଳରେ ସୁନାମ ଓ ଯଶ ପାଇବା ପାଇଁ କାମ କରିବ । ମାସରେ ଥରେ ଦୁଇଥର ଦୁହେଁ ମିଶି ପାଖ ଗାଁକୁ ଯିବ । ଲୋକ ସମ୍ପର୍କ ଚାକିରି କ୍ଷେତ୍ରରେ ଗୋଟାଏ ବଡ଼ ଆୟୁଧ । ସ୍କୁଲ ହତାରେ ଫଳଗଛ ଲଗାଇବାକୁ ପରାମର୍ଶ ଦେବୁ । ସ୍କୁଲ ଶିକ୍ଷକ, ଗ୍ରାମ ପଞ୍ଚାୟତ ସରପଞ୍ଚ ଓ ସେକ୍ରେଟେରୀମାନଙ୍କ ସହ ସମ୍ପର୍କ ରଖିବୁ । ଏହାଦ୍ୱାରା ଲୋକପ୍ରିୟତା ବଢ଼ିବ । ସ୍ଥାନୀୟ ଡାକ୍ତର, ବିଡ଼ିଓ, ତହସିଲଦାର ତଥା ସ୍କୁଲ, କଲେଜର ହେଡ଼ ମାଷ୍ଟର ଓ ପ୍ରିନ୍ସିପାଲଙ୍କ ସହିତ ମିଶିବ, ସୁସଂପର୍କ ରଖିବ ।

ଯେଉଁ ଲୋକ ସହିତ ସମ୍ପର୍କ ବଢ଼ାଇଲେ, ତୁମର ଭାବମୂର୍ତ୍ତି କମିବ, ସେପରି ଲୋକଠାରୁ ଦୂରେଇ ରହିବ । ଏପରି ଜୀବନ କଟାଇଥିବାରୁ ମୁଁ ଜଣେ ସଫଳ ଲୋକପ୍ରିୟ ବିଡ଼ିଓ, ଇଲେକ୍‌ସନ୍ ଅଫିସର୍, ଆର୍.ଟି.ଓ., ଅଣ୍ଡର୍ ସେକ୍ରେଟେରୀ ଓ ଡେପୁଟି ସେକ୍ରେଟେରୀ ଭାବେ ଅବସର ଗ୍ରହଣ କଲି । ଏ ପର୍ଯ୍ୟନ୍ତ ମୋର ସୁନାମ ଅଛି । ମୋର ପୁଅବୋହୂ ଭାବେ ତୁମେ ଦୁହେଁ ଯେମିତି ଯଶ, ସମ୍ମାନ ଓ ସୁନାମ ପାଇବ, ସେପରି କାମ କର – ଏହା ମୋର ଆନ୍ତରିକ କାମନା ।

ତୋ ସାନ ଭାଇ ଇଂଜିନିୟର ଭାବେ ନାଁ କରିଥିବାରୁ ବାପା ହିସାବରେ ମୁଁ ବହୁତ ଖୁସୀ ଓ ଆନନ୍ଦିତ । ଗର୍ବିତ ମଧ୍ୟ । ଜଣେ ଯୁବ ବିଜ୍ଞାନୀ ଭାବେ, ଜିତ୍ ତୁ ସେହି ଯଶ ପାଅ । ସେଥିରେ ତୋତେ ଗୀତା ସାହାଯ୍ୟ କରୁ – ଏତିକି ମୋର ବ୍ୟାକୁଳତା ।

ମୋର କାହା ପ୍ରତି ଅନାଦର କି ହତାଦର ଭାବ ନାହିଁ । ୭୧ ବର୍ଷ ହେଲା, ଆଉ କେତେ ଦିନ ବଞ୍ଚିବି ଯେ ଈର୍ଷା, ରାଗ, ଦ୍ୱେଷ, ପରଶ୍ରୀକାତରତା ଆଦି ମନ୍ଦ ଗୁଣରେ ଆକ୍ରାନ୍ତ ହେବି ? ଜିତ୍, ତୁ ଜାଣୁ ମୁଁ କେତେ ପିଲାଙ୍କୁ ପାଠ ପଢ଼ାଇ ଚାକିରି କରାଇ ଦେଇଛି । ମଣିଷ ଗଢ଼ିବାର 'ନିମିତ୍ତ ମାତ୍ର' ଭୂମିକାଟି ନିର୍ବାହ କରିଚାଲିଛି । ପାଞ୍ଚ ବର୍ଷ କଲେଜରେ ଲାବୋରେଟୋରି ଆସିଷ୍ଟାଣ୍ଟ୍ ଥାଇ ମୋ ହାତ ଗଢ଼ା ଯୁବକ ଯୁବତୀମାନେ ଡାକ୍ତର, ଇଞ୍ଜିନିୟର, ପ୍ରଫେସର୍, ଡିପିଆଇ ହୋଇଛନ୍ତି । ଏବେ ବି ମୋତେ ଦେଖିଲେ ସମ୍ମାନ ଦିଅନ୍ତି । ଫୋନ୍‌ରେ ପୂର୍ବ କଥା ମନେ ପକାଇ ସ୍ମୃତି ଚାରଣ କରନ୍ତି । ମୁଁ ନିର୍ଲୋଭ ଥିଲି । କିଛି ତ୍ୟାଗ ବି କରୁଥିଲି । ସେହି ଗୁଣଗୁଡ଼ିକ ତୁମେ ଆଚରଣ କର ।

ଆଦିବାସୀ ଅଞ୍ଚଳରେ ଥିବା ସମୟ ତକ ବନବାସୀଙ୍କ ସେବାକର; ସେମାନଙ୍କର ଉପକାର କର । କଲ୍ୟାଣ ପାଇବ ।

ବର୍ଷକ ମଧ୍ୟରେ ତୋର ଚାକିରି ନିୟମିତ ହୋଇ ସବୁ ଦରମା ଓ ଇନ୍‌କ୍ରିମେଣ୍ଟ୍ ମିଳିଗଲେ, ତୋତେ ଏ ପଟକୁ ବଦଳି କରି ନେଇ ଆସିବି ଏବଂ ଗୀତା ଚାହିଁଲେ ଏପଟେ କୌଣସି କଲେଜରେ ଅଧ୍ୟାପିକା ରହିପାରିବ – ସେ ବ୍ୟବସ୍ଥା କରିହେବ । ଇତି । ଶୁଭାକାଂକ୍ଷୀ, ବାପା ।''

ଗୋଟିଏ ମାସରେ ୮ ତାରିଖରୁ ୨୨ ତାରିଖ ମଧ୍ୟରେ ବାପାଙ୍କଠାରୁ ଲଗାଏତ୍ ତିନୋଟି ପତ୍ର ପାଇ ପୁଅ ବୋହୂ ପଢ଼ିଥିବେ । ବିଶେଷ କରି ବୋହୂ ପଢ଼ିବ ବୋଲି ବାପା କଲେଜ ଠିକଣାରେ ଚିଠି ଦିଅନ୍ତି । ପ୍ରସେନ୍‌ଜିତ୍ ବାପାଙ୍କର ହୃଦୟର କଥା ଚିଠି ତିନୋଟିରୁ ହୃଦୟଙ୍ଗମ କଲେ । ମାତ୍ର ବୋହୂ ଗୀତା ? ପଚାରିଲେ – ଜିତ୍, ବାପା ୮ ତାରିଖରେ ଚିଠିରେ ଲେଖିଛନ୍ତି, ପଦ୍ମପତ୍ର ଉପରର ଜଳପରି ଚଳି ଶିଖିବା ଉଚିତ । ଏହାର ଅର୍ଥ କ'ଣ ? ପ୍ରସେନ୍‌ଜିତ୍ ମୁରୁକି ହସିଲେ – ଏତକ ବୁଝି ପାରିଲ ନାହିଁ ? ସାଇକୋଲଜିରେ ଏମ୍.ଏ. ପାସ୍ କରିଛ !

ଗୀତା ରାଗି ପଞ୍ଚମ । ମୁଁ ବୁଝି ପାରିଲି ନାହିଁ ବୋଲି ତ ପଚାରିଲି । ମୋ ଶିକ୍ଷା ପ୍ରତି ଆକ୍ଷେପ କରୁଛ କାହିଁକି ? ପ୍ରସେନଜିତ୍ ସାହାସ୍ୟ ବଦନରେ ଉତ୍ତର ଦେଲେ – ପଦ୍ମପତ୍ରରେ ଥିବା ଜଳ ପଦ୍ମ ପତ୍ରରେ ଲାଖି ରହେ ନାହିଁ । ନିର୍ଲିପ୍ତ ଭାବେ ଢଳ ଢଳ

ହେଉଥାଏ । ସେହିପରି ବ୍ୟକ୍ତି ସ୍ତ୍ରୀ ହେଉ ବା ପୁରୁଷ ହେଉ, ଆଉ ଜଣେ ବ୍ୟକ୍ତି ସହିତ ନିର୍ଲିପ୍ତ ଭାବେ ସମ୍ପର୍କ ରଖିବ । ତାହା ସହିତ ଜଡ଼ିତ ହୋଇଯିବ ନାହିଁ । ''ଡୋଣ୍ଟ ହାଫ୍ ଆଟାଚ୍‌ମେଣ୍ଟ ଟୁଆଡସ୍ ଏନି ବଡ଼ି ଅର୍ ଏନିଥିଙ୍ଗ୍' । ଦାଟ ଇଜ୍ ଦ ଏସେନ୍ସ ଅଫ୍ ଫାଦର'ସ୍ ସେଇଂ । ଡୁ ୟୁ ଅଣ୍ଡର୍ ଷ୍ଟାଣ୍ଡ' । ଗୀତା ଗମ୍ଭୀରତା ସହକାରେ ନୀରବ ରହିଲେ । ପୁଣି କିଛି ସମୟ ପରେ ସ୍ୱାମୀକୁ କହିଲେ – ଜିତ୍, ବାପା ପିଲାଙ୍କ ମଧ୍ୟାହ୍ନ ଭୋଜନ ଚାଉଳ ବ୍ୟବହାର କରିବାକୁ ମନା କରୁଛନ୍ତି । ମାତ୍ର ତୁମେ ଯେତେବେଳେ ଗାଁକୁ ଯାଇ ପନ୍ଦର ଦିନ ରହି ଆସୁଛ ବିନା ଛୁଟିରେ ଓ ଫେରି ଆସି ତୁମ ଦରମାରୁ ତୁମ ଉପର ହାକିମ୍‌କୁ କ'ଣ କିଛି ଦେଉ ନଥିବ ? ସେଇଟା ଅନ୍ୟାୟ ହେଲା ନାହିଁ ? ? ଅଥଚ ମଧ୍ୟାହ୍ନ ଭୋଜନ ଚାଉଳ ବସ୍ତାଏ ସେ ଦେଇଦେଲେ ବୋଲି ବାପାଙ୍କୁ ଜଣାଇଦେଲ ଜଣେ ଆଦର୍ଶବାଦୀ ଯୁବକ ଭାବେ । ବାପା ଭଡ଼ାଏ ଉପଦେଶ ବଖାଣିଦେଲେ ତାଙ୍କ ଲମ୍ବା ଚିଠିରେ । ଏଇଟା ତୁମର ଓ ବାପାଙ୍କର ଦ୍ୱୈତ ବ୍ୟକ୍ତିତ୍ୱ ନୁହେଁ କି ?

ପ୍ରସେନ୍‌ଜିତ୍ ଗୀତାଙ୍କ ସହିତ ଆଉ ଯୁକ୍ତି କରିବାକୁ ଚାହିଁଲେ ନାହିଁ । କାରଣ ତାଙ୍କର 'ପୂଜନୀୟ ବାପା' ଯୁକ୍ତିର ପରିଧି ମଧ୍ୟକୁ ଚାଲି ଆସୁଛନ୍ତି । ସମାଜରେ କୌଣସି ମଣିଷ ଶତକଡ଼ା ଶହେ ସଚୋଟ ଓ ଆଦର୍ଶବାନ୍ ନୁହେଁ । ଏ ମଧ୍ୟାହ୍ନ ଭୋଜନ ଚାଉଳ ବିକୁଥିବା ମାଷ୍ଟ୍ରଗୁଡ଼ାକଠାରୁ ତାଙ୍କର ବାପା ଯେ ଚାକିରି ଜୀବନରେ ଅଧିକ ସଚ୍ଚୋଟ ଓ ନିଷ୍ପାପର ଥିଲେ, ଏକଥା ପ୍ରସେନ୍‌ଜିତ୍ ଦେଖି ଆସିଛନ୍ତି । ତେଣୁ ସେ ବାପାଙ୍କ କଥାକୁ ସମ୍ମାନ ଦିଅନ୍ତି । ବାପାଙ୍କର ଦୋଷ ଦୁର୍ବଳତା ଥାଇପାରେ; ମାତ୍ର ସେ ସମାଜର ବୃହତ୍ତର ସ୍ୱାର୍ଥ ବିରୁଦ୍ଧରେ କାର୍ଯ୍ୟ କରି ନାହାନ୍ତି କି କାହାକୁ କରିବାକୁ ପ୍ରଶ୍ରୟ ଓ ପ୍ରୋତ୍ସାହନ ଦିଅନ୍ତି ନାହିଁ । ଏତିକି ସେ ବାପାଙ୍କ ଚରିତ୍ର, ଚାଲିଚଳଣିରୁ ଶିଖିଛନ୍ତି । ଗୀତା କେତେଦିନ ବାପାଙ୍କ ସମ୍ପର୍କରେ ଆସିଲା ଯେ, ତାଙ୍କୁ ଓ ତାଙ୍କ ଭାଷାକୁ ବୁଝି ପାରିବ ? ପୂରା ବୁଝିବାକୁ ତାକୁ ସମୟ ଲାଗିବ । ଏହା ହିଁ ଭାବି ପ୍ରସେନ୍‌ଜିତ୍ ଯୁକ୍ତିରୁ ନିବୃତ୍ତ ରହନ୍ତି ।

ତଥାପି ମଝିରେ ମଝିରେ ପ୍ରସେନ୍‌ଜିତ୍ ଓ ଗୀତାଙ୍କ ମଧ୍ୟରେ ଖଟ୍‌ଖାଟ୍ ଲାଗେ, ସେ ଭଦ୍ରଲୋକର ଘନ ଘନ ଆଗମନ ଯୋଗୁଁ । ସେ ଲୋକ କୌଣସି ନା କୌଣସି ଆଳରେ ନବ ଦମ୍ପତିଙ୍କ ଘରକୁ ଆସନ୍ତି । ପ୍ରସେନ୍‌ଜିତ୍‌ଙ୍କ ଉପସ୍ଥିତିରେ ଓ ଅନୁପସ୍ଥିତିରେ । ମଟର ସାଇକେଲ୍ ବି ପୂର୍ବବତ୍ ଆଣି ସେମାନଙ୍କ ଦାଣ୍ଡ ଘରେ ରଖନ୍ତି । କାରଣ ତାଙ୍କ ନିଜ ଘରେ ହେଭି ଗାଡ଼ି ରଖିବାକୁ ଚେନାଏ ଯାଗା ନାହିଁ । ବାପା ବି ଆସି ଏ ସବୁ ଦେଖନ୍ତି । ସମ୍ପର୍କ ଓ ଶାନ୍ତି ରକ୍ଷା ଦୃଷ୍ଟିରୁ ନୀରବ ରହିବାକୁ ବାଧ୍ୟ ହୁଅନ୍ତି । ପ୍ରସେନ୍‌ଜିତ୍‌ଙ୍କ

ମାଆ ଯେଉଁ ମାସେ ପୁଅ ବୋହୂଙ୍କ ପାଖରେ ରହିଥିଲେ, ବୋହୂ ଗୀତାକୁ ବୁଝାଇବାକୁ ଝାଙ୍କ ଛିଡ଼ି ଯାଇଛି । ଓଲଟି ବୋଉଙ୍କ ପଛରେ ପ୍ରସେନ୍‌ଜିତ୍‌ଙ୍କୁ ଗୀତା ପଚାରନ୍ତି - ବୋଉ କେଉଁ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଛନ୍ତି ? କ'ଣ ବି.ଏ., ଏମ୍.ଏ. ପଢ଼ିଲାପରି କଥା କହୁଛନ୍ତି ! ପ୍ରସେନ୍‌ଜିତ୍ କହନ୍ତି - ଜଣେ ଡେପୁଟି ସେକ୍ରେଟେରୀର ସ୍ତ୍ରୀ ଭାବେ ବୋଉର ସାମାଜିକ ସରହଦ ଯେତେ ବିସ୍ତାରିତ ଓ ପ୍ରଶସ୍ତ ସେଥିରେ ପାଠପଢ଼ା ଡିଗ୍ରୀର କି ଆବଶ୍ୟକତା ଅଛି ?

ବାପା ଇଲେକ୍‌ସନ ଅଫିସର୍ ଥିଲାବେଳେ, ସେଠାରେ ଯେଉଁ 'ଅଫିସରସ୍ ଲେଡ଼ିଜ୍ କ୍ଲବ୍' ଥିଲା, ସେଥିରେ କଲେକ୍ଟରଙ୍କ ମିସେସ୍ ପ୍ରେସିଡେଣ୍ଟ, ଏସ୍.ପି.ଙ୍କ ମିସେସ୍ ଭାଇସ୍ ପ୍ରେସିଡେଣ୍ଟ ଥିଲାବେଳେ ମୋ ବୋଉ ଥିଲା ସେକ୍ରେଟେରୀ ଦୀର୍ଘ ଚାରି ପାଞ୍ଚ ବର୍ଷ । ପ୍ରତିଦିନ ଆମ ବସାରେ ବାପାଙ୍କ ପାଖରେ କବି ଲେଖକ, ସାହିତ୍ୟିକ, ବୁଦ୍ଧିଜୀବୀଙ୍କ ଭିଡ଼ । ବାପା ବୋଉଙ୍କର ସଭା ସମିତିରେ ଯୋଗଦାନ । ବୋଉ ଲେଡ଼ିଜ୍ କ୍ଲବ୍ ତରଫରୁ ମଞ୍ଚସ୍ଥ 'ଝାନ୍ସି ରାଣୀ' ଡ୍ରାମାରେ ଲକ୍ଷ୍ମୀବାଈଙ୍କ ଧାଈମା ରୋଲ୍ କରିଥିଲା । ଏ.ଡି.ଏମ୍. ପତ୍ରୀଙ୍କ ମିସେସ୍ ଝାଂସି ରାଣୀ ରୋଲ୍ କରିଥିଲେ । ମିସେସ୍ ଗୀତା ମାଥୁର ନନ୍-ଓଡ଼ିଆ ହୋଇ ମଧ୍ୟ ଇଂରେଜ ଜାକ୍‌ସନ୍ ରୋଲ୍ କରିଥିଲେ । ଏପରି ଭାବରେ ଜୀବନ କଟାଇଥିବା ଭଦ୍ର ମହିଳାର କଲେଜ ଶିକ୍ଷା ବା ଡିଗ୍ରୀର କି ଆବଶ୍ୟକତା ?

ପ୍ରସେନ୍‌ଜିତ୍‌ଙ୍କ କଥାରେ ଗୀତା ଅଭିମାନ ଭରା ନାସ୍ତିବାଚକ ନୀରବତା କୁହେଳି ମଧ୍ୟରେ ଖାଲି ଘାଇଲା ନାଗୁଣୀ ଭଳି ଭିତରେ ଭିତରେ ଫଁ ଫଁ ହେଉଥାନ୍ତି । ପ୍ରକୃତି ମଲେ ତୁଟେ । ଜିଦ୍‌ଖୋର୍ ପ୍ରକୃତି ନିଜର କ୍ଷତି କରେ ଏବଂ ଅନ୍ୟର ଅର୍ଥାତ୍ ପ୍ରତି ପକ୍ଷର ସର୍ବନାଶ କରେ । 'ଗୀତା-ପ୍ରସେନ୍‌ଜିତ୍' କ୍ଷେତ୍ରରେ ସେଇୟା ହିଁ ଘଟିବ ବୋଲି ଜଳ ଜଳ ହୋଇ ଦେଖା ଯାଉଥିଲା । ସମୟ ଗଡ଼ି ଚାଲିଥିଲା, ବିଧି ନିର୍ଦ୍ଦିଷ୍ଟ ଖୋପରେ ପହଞ୍ଚିବା ପାଇଁ ।

କ୍ରମେ କ୍ରମେ ପ୍ରସେନ୍‌ଜିତ୍‌ଙ୍କର ସକ୍ରିୟତା ଓ ଗତିଶୀଳତା କମି କମି ଆସୁଥାଏ । ସେ ମାନ୍ଦା ମାନ୍ଦା ଅନୁଭବ କରୁଥାନ୍ତି । ଥରେ ଛୁଟିରେ ଘରକୁ ଆସିଲେ । ଫେରିଲାବେଳେ ବାପା ସାଙ୍ଗରେ ଗଲେ । ଟ୍ରେନ୍ ସରସ୍ୱତୀ ପୁରରେ ସକାଳୁ ସକାଳୁ ପହଞ୍ଚିଲା । ଗୋଟିଏ କମାଣ୍ଡର୍ ଜିପ୍ ରିଜର୍ଭ କରି ଗୋବିନ୍ଦପାଟଣା ଗଲେ । ଗୀତାଙ୍କ ସହ ତାଙ୍କ ସାନ ଭଉଣୀ ଓ ଝିଆରୀ ଥିବାରୁ ପ୍ରସେନ୍‌ଜିତ୍ ମଟନ୍ ନେବାକୁ ଇଚ୍ଛା କଲେ । ଟ୍ରେନ୍‌ରୁ ଓହ୍ଲାଇ ବାପାଙ୍କୁ କହି ସରସ୍ୱତୀପୁରରୁ କେଜିଏ ମଟନ୍ କିଣି

କରିନେଲେ । ବାପା ମନେ ମନେ ଭାବୁଥାନ୍ତି – ଜିତ୍‌ର ବୋହୂ ପ୍ରତି କେତେ ଶ୍ରଦ୍ଧା । ସେ ମଟନକୁ ଭଲ ପାଏ ବୋଲି ମଟନ୍ କିଣି ନେବାକୁ କହିଲା । ସ୍ୱାମୀ-ସ୍ତ୍ରୀ ସମ୍ପର୍କ ଏପରି ହେବା ଚାହିଁ ।

ଗୋବିନ୍ଦପାଟଣାରେ ପହଞ୍ଚିଲେ । ରନ୍ଧାବଢ଼ା ହେଲା । ବାପା ଅନୁଭବ କଲେ – ବୋହୂ କାହିଁକି ଟିକିଏ ଦୂରେଇ ଦୂରେଇ ରହୁଛି । ଜଳଖିଆ, ଖାଇବା ଆଦି ସାନ ଭଉଣୀ ଓ ଝିଆରୀ ହାତରେ ପଠାଉଛି । ନିଜେ ଆସି ଦେଉ ନାହିଁ । ପ୍ରସେନ୍‌ଜିତ୍ ବି ଅନୁଭବ କଲେ । ବୋହୂ ହୋଇ ଗୀତା ମୁଣ୍ଡରେ ଓଢ଼ଣୀ ଦେଇ ନିଜେ ଖାଇବାକୁ ଆଣି ଦେବା କଥା । ଏମିତି କ'ଣ ତା' ସାନ ଭଉଣୀ ଝିଆରୀ ହାତରେ ପଠାଉଛି ? କ'ଣ ମେକ୍ସି ପିନ୍ଧି ବିନା ଓଢ଼ଣାରେ ଘର ଭିତରେ ଛାତି ଫୁଲାଇ ବାପାଙ୍କ ଆଗରେ ଯା'ଆସ କରୁଛି ? ଏଥରକ ଏପରି ଚାଲି ଚଳଣି କାହିଁକି ??

ବାପା ଅନୁଭବ କଲେ ପୁଅ ଓ ବୋହୂ ମଧ୍ୟରେ ଦୂରତା ବଢ଼ିଛି ସିନା କମି ନାହିଁ । ତେଣୁ ଦୁହିଁଙ୍କୁ ପାଖରେ ବସାଇ କହିଲେ – ମିଳିମିଶି ଚଳିବ । ମୁଁ ସିନା ମଝିରେ ମଝିରେ ଏମିତି ମାସେ ଦୁଇ ମାସରେ ଥରେ ଅଧେ ଆସୁଥିବି । ଗୀତା ତୁ ଜିତ୍‌କୁ ଭଲ ବ୍ୟବହାର କରିବୁ, ତାକୁ ନିଜର କରିନେବୁ । ଏତକ ଶୁଣି ସାଙ୍ଗେ ସାଙ୍ଗେ ଗୀତାକହିଲା – ସେ ବ୍ୟବହାର ଖରାପ କରି ଟେନ୍‌ସନ୍ ବଢ଼ାଉଛନ୍ତି ନା, ମୁଁ ତ ଠିକ୍ ଅଛି । 'ହଉ ମାଆ, ଠିକ୍ ଅଛି ଛଅମାସେ ବର୍ଷେ ତୁ ସମ୍ଭାଳିନେଲେ ଜିତ୍ ଭଲ ହୋଇଯିବ । ତୁ ତ ଜାଣୁ ତାର ଉପର ଅଫିସର୍‌ମାନେ ତାକୁ ହଇରାଣ କରିଛନ୍ତି । ଦୁଷ୍ମନ୍ତପୁର ପରି ଅସ୍ୱାସ୍ଥ୍ୟକର ଜାଗାରେ ପୋଷ୍ଟିଂ ଦେଇଛନ୍ତି । ରହିବାକୁ ଘରଦ୍ୱାର ନାହିଁ । ତଥାପି ସେ ସେଠାରେ ଚଳିଛି । ତିନି ତିନିଥର ମ୍ୟାଲେରିଆରେ ଆକ୍ରାନ୍ତ ହୋଇଛି । ବିନା କାରଣରେ ତା ଦରମା ବନ୍ଦ କରିଛନ୍ତି । ଟି.ଏ. ଦେଇ ନାହାନ୍ତି । ତେଣୁ ମ୍ୟାଲେରିଆରୁ ଆରୋଗ୍ୟ ଲାଭ କଲାପରେ ରୋଗର ଆଫ୍ଟର୍ ଏଫେକ୍ଟ ସ୍ୱରୂପ ସେ ଚିଡ଼ଚିଡ଼ା ହୋଇଯାଇଛି । ତାର 'ଲସ୍ ଅଫ୍ ଆପେଟାଇଟ୍' ଘଟିଛି । ମୁଣ୍ଡକୁ ଚଟ୍‌କରି ରାଗ ଚଢ଼ିଯାଉଛି । ସେଥିପାଇଁ ସେ ଚିକିତ୍ସିତ ହେଉଛି, ଔଷଧ ଖାଉଛି, ଏ ସବୁ ଜାଣି ତୁ ତ ବିବାହ ପାଇଁ ହଁ ମାରିଲୁ । ସବୁ ସମ୍ଭାଳିବୁ କହିଲୁ । ଏବେ ମୁଁ ଅନୁଭବ କରୁଛି, ତୁମ ଭିତରେ ଦୂରତା ବଢ଼ିଛି । ଏପରି ହେଲେ ଜିତ୍‌ର ଆରୋଗ୍ୟ ଲାଭ କରିବା ଡେରି ହେବ । ତୁ ମାଆ ଗୋଟିଏ ବର୍ଷ ଚୁପ୍ ରହି ତାକୁ ଚଳାଇନେ । ସବୁ ଠିକ୍ ହୋଇଯିବ । ଏ ଆଲୋଚନା ନଭେମ୍ବର ୨୮ ତାରିଖରେ । ଗୀତା ଅବଶ୍ୟ ଶଶୁରଙ୍କ ସହ ବିଶେଷ ଯୁକ୍ତି କଲେ ନାହିଁ, କିନ୍ତୁ ଜିତ୍ ଯେ

ଅଯଥା ତାଙ୍କୁ ଦୋଷ ଦେଉଛନ୍ତି, ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି – ଏ କଥା ଆଲୋଚନା ମଝିରେ ପରୋକ୍ଷରେ ସୂଚାଇ ଦେଲେ ।

ବାପା ୨୮ ନଭେମ୍ବରରୁ ୪ ଡିସେମ୍ବର ପର୍ଯ୍ୟନ୍ତ ରହି ପୁଅବୋହୂଙ୍କ ହାବଭାବ ନିରୀକ୍ଷଣ କରୁଥାନ୍ତି । ଲେଖକ ଲୋକ ତ । ଜିତ୍‌ଙ୍କୁ ପାଖରେ ବସାଇ ତାଙ୍କର ପୂର୍ବମାସ ଗୁଡ଼ିକର ଟୁର୍ ଡାଇରୀ ଲେଖାଇଲେ । ନିଜେ ଲେଖିଦେଲେ ବି । ରହଣି ସମୟରେ ବୋହୂ କଲେଜରୁ ଆଣିଥିବା ପ୍ରତିଭା ରାୟଙ୍କର ଏକ ଗଳ୍ପ ସଂକଳନ ପଢ଼ିଲେ । ପଢ଼ା ଶେଷ ହେବା ପରେ ନିଜେ ଗୋଟିଏ ଗଳ୍ପ ଲେଖିଲେ ନିଜ ସ୍କୁଲ ଓ କଲେଜ ଜୀବନରେ ଘଟିଥିବା ଘଟଣା ଓ ଅଭିଜ୍ଞତାକୁ ନେଇ । ରାତି ଅନିଦ୍ରା ହୋଇ ଗଳ୍ପଟିକୁ ସାରିଲେ ।

ଯେତେ ଡେରିରେ ଶୋଇଲେ ବି ୪ଟା କିମ୍ବା ୫ଟା ପୂର୍ବରୁ ଉଠିବା ବାପାଙ୍କର ଅଭ୍ୟାସ । ସେ ଆସିବା ଦିନରୁ ଅନୁଭବ କରୁଛନ୍ତି, ଜିତ୍ ଚିନ୍ତାଶୀଳ ରହୁଛି । ଡେରିରେ ନିଦ ଭାଙ୍ଗୁଛି । ୯ଟା ୧୦ଟା ପର୍ଯ୍ୟନ୍ତ ଶୋଉଛି । ପୁଅବୋହୂ ଏକାଠି ରହିଲେ ଜିତ୍‌ର ନିଦ ଦିନ ୧୦ଟାକୁ ଭାଙ୍ଗିବ – ଏହା ସ୍ୱାଭାବିକ । ସେ ବି ତ ନୂଆ ନୂଆ ବାହା ହୋଇଥିଲାବେଳେ ଏପରି ଘଟିଛି ।

ତଥାପି ବାପା ପ୍ରସେନ୍‌ଜିତ୍‌ଙ୍କୁ ଦିନେ ପଚାରିଲେ – ଆରେ ତୁ ବୋହୂ ପାଖରେ ଥାଇ, ଏପରି ଚିନ୍ତାଶୀଳ ଦେଖାଯାଉଛୁ କାହିଁକି ? 'ବାପା, ନିଦ ଔଷଧ ଖାଇ ମଧ୍ୟ ନିଦ ହେଉ ହେଉ ରାତି ଗୋଟାଏ ଦୁଇଟା ହୋଇ ଯାଉଛି । ଚିନ୍ତାରେ ନିଦ ହେଉ ନାହିଁ । ତେଣୁ ଦିନ ୯ଟା ୧୦ଟା ବେଳକୁ ନିଦ ଭାଙ୍ଗୁଛି ।

– କ'ଣ ଚିନ୍ତା କରୁଛୁ ? କାହିଁକି ଚିନ୍ତା କରୁଛୁ ? – ପଚାରିଲେ ବାପା ।

– ୟା' ପାଖେ କିପରି ଚଳିବି – ଏ ଦୁଶ୍ଚିନ୍ତାରେ ବାପା ମୋତେ ରାତିରେ କି ଦିନରେ ନିଦ ହେଉ ନାହିଁ ।

– ଛି..., ମୋ ବାପାଟା ପରା... । ତୁ କାହିଁକି ଏପରି ଚିନ୍ତିତ ହେଉଛୁ ? ମନଟାକୁ ହାଲୁକା କର । ଡୋଣ୍ଟ ବି ସିରିୟସ୍ ଟୁ ଏନି ଥିଙ୍କ୍ ଏକ୍‌ସେପ୍ଟ ୟୋର୍ ସର୍ଭିସ ମାଟରସ୍ ।' ମନକୁ ସବୁବେଳେ ଫ୍ରି ରଖ । ପ୍ରସେନ୍‌ଜିତ୍ କ'ଣ କହିବାକୁ ଚାହୁଁଥିଲେ କିନ୍ତୁ ବାପାଙ୍କୁ କହି ପାରିଲେ ନାହିଁ ।

ମାର୍ଗଶୀର ମାସ ଗୁରୁବାର । ବୋହୂ ଗୀତା ପାହାନ୍ତାରୁ ଉଠି ଲକ୍ଷ୍ମୀ ପୂଜାରେ ବ୍ୟସ୍ତ । ଲକ୍ଷ୍ମୀ ପୁରାଣ କ୍ୟାସେଟ୍ ଲାଗିଛି । ବାପା ବହୁତ ଖୁସୀ ହୋଇଗଲେ ।

ପଚାରିଲେ – ମାଆ, ଗୀତା ଏ କ୍ୟାସେଟ୍ ଆଣିଛୁ, ଭଲ କରିଛୁ । ହଁ ବାପା, ଜିତ୍ ପରା ଏ କ୍ୟାସେଟ୍ ଜୟପୁର ଯାଇଥିଲେ ଯେ ମୋ କହିବା ମତେ କିଣି ଆଣିଛନ୍ତି । 'ହଁରେ ମା', ତୁ କହ ବା ନ କହ, ଜିତ୍ ଏ ସବୁ କ୍ୟାସେଟ୍ ଦେଖିଲେ ସ୍ୱତଃ କିଣି ପକାଏ । ଆମ ଘରେ ଗୋଟାଏ ବଡ଼ ଟ୍ରଙ୍କ୍‌ରେ କେତେ ଯେ କ୍ୟାସେଟ୍ ରଖିଛି... । ସମ୍ଭବତଃ କୋଡ଼ିଏ ପଚିଶ ହଜାର ଟଙ୍କାର ହେବ । ସାରା ଜୀବନ ଭିତରେ ସବୁ କ୍ୟାସେଟ୍ ବଜାଇ ଶୁଣି ପାରିବ କି ନାହିଁ ମୋର ସନ୍ଦେହ । ବହି, କ୍ୟାସେଟ୍ ଓ ସିଡ଼ି କିଣିବା ତାର ଗୋଟାଏ ହବି । ପଚାରିଲେ, କହିବ – ବାପା, ଏବେ ନ କିଣିଲେ, ବାହା ହେଲାପରେ କ'ଣ ଆଉ କିଣି ହେବ ? ଦୁଇଟା ଗଡ଼ରେଜ୍ ଆଲ୍‌ମିରା ଓ ଚାରିଟା ଟ୍ରଙ୍କରେ ସେ କିଣିଥିବା ବହି ଭର୍ତ୍ତି । ସବୁ ପଢ଼ିବ ନାହିଁ; ପଢ଼ିବାକୁ ସମୟ ନାହିଁ । କିନ୍ତୁ କିଣିବାରେ ତା'ର ଆନନ୍ଦ । ବେଳେବେଳେ ବିରକ୍ତ ହେବି ବୋଲି ଲୁଚାଇ ଲୁଚାଇ କିଣିବ । ଠାକୁର, ଠାକୁରାଣୀ ସାଧୁ ସନ୍ଥ ମହାପୁରୁଷଙ୍କ ଫଟୋ କିଣିବା ତାର ଗୋଟାଏ ମାନିଆ । ସ୍ୱାମୀ ବିବେକାନନ୍ଦଙ୍କର ଏକ ବିରାଟ ଫଟୋ କିଣି ଘରେ ଟାଙ୍ଗିଛି, ପୁଣି ସତୁରୀ ଟଙ୍କା ଦେଇ ବିବେକାନନ୍ଦଙ୍କର ଆଉ ଗୋଟିଏ କୁନି ଫଟୋ କିଣିଲା । ମୁଁ ବିରକ୍ତ ହେବି ବୋଲି କୋଉ ଟ୍ରଙ୍କରେ ଲୁଚାଇ ରଖିଛି । ବାପା କହି ଚାଲିଛନ୍ତି । ଗୀତାଙ୍କର ଏ ଦିଗରେ କାନ ନାହିଁ । ଲକ୍ଷ୍ମୀ ପୂଜା ପାଇଁ ପିଠା କରିବାରେ ବ୍ୟସ୍ତ । ସାନ ଭଉଣୀ ଓ ଝିଆରୀ ପିଠା କରିବାରେ ଗୀତାଙ୍କୁ ସାହାଯ୍ୟ କରୁଥାନ୍ତି ।

ବାପା ଯାଇ ଦାଣ୍ଡଘରେ ବସି ଖବର କାଗଜ ପଢ଼ିଲେ । ଆଖି ପଡ଼ିଗଲା ଗୋଟାଏ ଖବର ଉପରେ – ''ଯୁବ ପିଢ଼ିରେ ହୃଦ୍‌ରୋଗ ମହାମାରୀ ରୂପ ଧାରଣ କରୁଛି'' । ଓଡ଼ିଶାର ଜନ୍ମିତ ବିଖ୍ୟାତ ହୃଦରୋଗ ବିଶେଷଜ୍ଞ ଡାକ୍ତର କବି ପ୍ରସାଦ ମିଶ୍ର ଭୁବନେଶ୍ୱରରେ ଏକ ସାମ୍ବାଦିକ ସମ୍ମିଳନୀରେ କହିଛନ୍ତି, ଆଧୁନିକ ସମସ୍ୟା ବହୁଳ ସମାଜରେ ଯୁବ ପିଢ଼ି ମଧ୍ୟରେ ହୃଦରୋଗ ଏକ ମହାମାରୀ ରୂପେ ବ୍ୟାପୀବାରେ ଲାଗିଛି ।

(୧) ତାହାର ମୁଖ୍ୟ କାରଣ, ଯୁବକ ଯୁବତୀମାନେ ବହୁଳଭାବେ ଫୁଟ୍‌ପାଥ୍‌ର 'ଫାଷ୍ଟ ଫୁଡ୍' ବ୍ୟବହାର କରୁଛନ୍ତି । ପାରମ୍ପରିକ ଘର ତିଆରି ଖାଦ୍ୟ ଉପରେ ନିର୍ଭର କରୁ ନାହାନ୍ତି । (୨) ଯୁବକ ଅବସ୍ଥାରେ ବହୁ 'ଷ୍ଟ୍ରେସ୍ ଓ ଷ୍ଟ୍ରେନ୍'ର ସମ୍ମୁଖୀନ ହେବାକୁ ପଡୁଛି । ଅନିୟମିତ ଜୀବନ ଯାପନ, ଠିକ୍ ସମୟରେ ଭୋଜନ ଓ ଶୟନର ଅଭାବ, ଅନ୍-ଏମ୍ପ୍ଲୟମେଣ୍ଟ, ନିଶା ସେବନ, ଦୁଶ୍ଚିନ୍ତା, ନବ ବିବାହିତ ଜୀବନରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଉତ୍ତମ ବୁଝାମଣା ଓ ଆନୁଗତ୍ୟର ଅଭାବ । ବାରମ୍ବାର ଅବହେଳା ଓ

ମାନସିକ ନିର୍ଯ୍ୟାତନାର ସମ୍ମୁଖୀନ ହେବା । ଇଚ୍ଛା ଓ ବିବେକ ବିରୁଦ୍ଧରେ କାର୍ଯ୍ୟ କରିବାକୁ ବାଧ୍ୟ ହେବା ଇତ୍ୟାଦି ।

ସମ୍ବାଦଟି ପାଠ କରି ପ୍ରସେନ୍‌ଜିତଙ୍କ ବାପା ଗମ୍ଭୀର ଓ ଚିନ୍ତିତ ହୋଇଗଲେ ଏକ ଅନାଗତ ଆଶଙ୍କାରେ । ପ୍ରସେନ୍‌ଜିତ୍‌ଙ୍କର ଫାଷ୍ଟ ଫୁଡ୍ ପ୍ରତି ଅତ୍ୟନ୍ତ 'ଅବ୍‌ସେସନ୍' । ବୋହୂର ଆଚରଣ ଓ ବ୍ୟବହାରରେ ଏବେ ସେ ଦୁଷ୍ଚିନ୍ତାଗ୍ରସ୍ତ । ଶାରୀରିକ ପରିଶ୍ରମ ଏବଂ ବ୍ୟାୟାମର ଅଭାବ । ନିଦ ଔଷଧ ବ୍ୟବହାର ସତ୍ତ୍ୱେ ବିଳମ୍ବରେ ନିଦ୍ରା ଏବଂ ଦିନ ୯ଟା ୧୦ଟାରେ ଶଯ୍ୟାତ୍ୟାଗ । ଏ ସବୁ ତ ଶୁଭ ଲକ୍ଷଣ ନୁହେଁ । ତେବେ ସବୁ ପ୍ରଭୁଙ୍କ ଉପରେ ନିର୍ଭର କରେ- ବାପା ପ୍ରଭୁଙ୍କ ଉଦ୍ଦେଶ୍ୟରେ ଯୋଡ଼ ହସ୍ତ ହେଲେ ।

ସେ ଦିନ ଥାଏ ରବିବାର । ହାଟ ଦିନ । ଦିନ ୧୦ଟାରୁ ହାଟ ଲାଗେ । ତିନିଟା ଚାରିଟା ପର୍ଯ୍ୟନ୍ତ ଚାଲେ । ବାପା ଆଉ ଜିତ୍ ହାଟ କରିବାକୁ ଗଲେ । ଆଦିବାସୀ ହାଟ । ସୁରଙ୍ଗୀ କମଳା ଟଙ୍କାକୁ ଦୁଇଟା । ବାପା ଦଶ ଟଙ୍କାରେ କୋଡ଼ିଏଟା କିଣିଦେଲେ । ଅନ୍ୟାନ୍ୟ ପରିବା କିଣିଲେ । ଖୁସୀରେ ପ୍ରସେନ୍‌ଜିତ୍ ପରିବା ବୋହୁଥାନ୍ତି ।

ଜଣେ ପ୍ରାଥମିକ ଶିକ୍ଷକ ଦେଖାହେଲେ । ପ୍ରସେନ୍‌ଜିତ୍ ବାପାଙ୍କ ସହ ପରିଚୟ କରାଇଦେଇ କହିଲେ – ବାପା ଆସିଛନ୍ତି, ଶିକ୍ଷା ବିଭାଗରେ ଜଏଣ୍ଟ ସେକ୍ରେଟେରୀ ଥିଲେ । ଜଣେ ଲେଖକ । ଖରବକାଗଜ, ବିଭିନ୍ନ ପତ୍ର ପତ୍ରିକାରେ ବାପାଙ୍କର ଅନେକ ଲେଖା ବାହାରେ । ଶିକ୍ଷକ ଜଣକ କହିଲେ – ସାର୍, ମୁଁ ଯିବି, କିଛି ଆଲୋଚନା କରିବି । ଆପଣଙ୍କ ଅଭିଜ୍ଞତା ଶୁଣିବି । ବାପା କହିଲେ – ହଉ ଆସନ୍ତୁ, ଆପଣଙ୍କୁ ସଦା ସ୍ୱାଗତ'' ।

ତା'ପରେ ମଧ୍ୟାହ୍ନ ଭୋଜନ ପୂର୍ବରୁ ବାପା, ପୁଅ ବୋହୂଙ୍କୁ ବସାଇ କଥାବାର୍ତ୍ତା ହେଲେ । ପ୍ରସେନ୍‌ଜିତ୍ ରଙ୍ଗିନ୍ ଟିଭି, ସିଡ଼ି, କ୍ୟାସେଟ୍, ଭିଡିଓ ଏହା ମଧ୍ୟରେ କିଣି ଦେଇଛନ୍ତି । ଆଉ ତାଙ୍କ ଫ୍ରିଜ୍, ଗ୍ରାଇଣ୍ଡର, କେତୋଟି ପ୍ଲାଷ୍ଟିକ୍ ଚେୟାର୍, ଟିଭି ଓ ଫ୍ରିଜ୍ ଷ୍ଟାଣ୍ଡ କିଣିବାକୁ ବାକି ଅଛି । ହିସାବ ହେଲା – କମାଣ୍ଡର ଗାଡ଼ି ନେଇ ଭବାନୀପୁରମ୍ ସୋରୁମ୍‌ରୁ ଏସବୁ କିଣି ଆଣିଲେ ଯାତାୟାତ ଖର୍ଚ୍ଚ ସହ ପନ୍ଦର ହଜାର ଟଙ୍କା ଲାଗିବ । ଗୀତା କହିଲେ – ବାପା ଅଛନ୍ତି, ସାଙ୍ଗରେ କିଣିବାକୁ ଯିବେ । ବାପା ହଁ ମାରିଲେ । କହିଲେ – ଗୀତା ପସନ୍ଦରେ ସବୁ କିଣା ଯିବ; କିନ୍ତୁ ଯିବି, ଭବାନୀପୁରମ୍ ଦେଖି ଆସିବି । ପ୍ରସେନ୍‌ଜିତ୍ ଦୁଇମାସ ଦରମା ଷୋଳ ହଜାର ଟଙ୍କା ପାଇଥାନ୍ତି । ବାପା ସାଙ୍ଗରେ ବାର ହଜାର ଟଙ୍କା ଆଣିଥାନ୍ତି, ଫ୍ରିଜ୍, ଗ୍ରାଇଣ୍ଡର୍ ଆଦି କେତୋଟି

ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କିଣି ଦେବା ପାଇଁ । ପ୍ରସେନ୍‌ଜିତ୍‌ଙ୍କର ଷୋଳ ହଜାର ଦରମା ଟଙ୍କା ଏବଂ ବାପା ଆଣିଥିବା ବାର ହଜାର ଟଙ୍କା ମିଶି ଅଠେଇଶ ହଜାର ଟଙ୍କା ପାଖରେ ଥାଏ । ଭବାନୀପୁରମ୍ ସଉଦା ବାବଦକୁ ପନ୍ଦର ହଜାର ଗଲେ ବାକି ରହିବ ତେର ହଜାର ଟଙ୍କା । ବାକି ବୁକୁରା ସୁଜି ପୁଣି ଦରମା ମିଳିବା ପର୍ଯ୍ୟନ୍ତ ହାତରେ ପଇସା ରହିବ । ପ୍ରସେନ୍‌ଜିତ୍ କହିଲେ – ବାପା, ମୁଁ ଏସ୍.ବି.ଆଇ. ସେଭିଙ୍ଗିସ୍ ଆକାଉଣ୍ଟରେ କିଛି ସଞ୍ଚୟ କରିବି । ବାପା କହିଲେ – ଆରେ, ଅବଶିଷ୍ଟ ତେର ହଜାରରୁ ବାକି ବୁକୁରା ଓ ଏ ମାସର ଅବଶିଷ୍ଟ ଦିନ ଖର୍ଚ୍ଚ ଗଲେ ୪/୫ ହଜାର ତୁ ସଞ୍ଚୟ ବହିରେ ରଖି ପାରିବୁ । ପ୍ରସେନ୍‌ଜିତ୍ ଆଶ୍ୱସ୍ତ ହେଲେ ।

ସଞ୍ଚୟ କରିବାରେ ପ୍ରସେନ୍‌ଜିତ୍‌ଙ୍କ ଭାରି ମନ । ଥରେ ବାପାଙ୍କୁ କହୁଥିଲେ – ବାପା, ଜିପିଏଫ୍‌ରେ ପ୍ରାୟ ଦେଢ଼ ଲକ୍ଷ ଜମା ହେଲାଣି; ଚଳିତ ବର୍ଷ ଆସିଥିବା ଆକାଉଣ୍ଟ ସ୍ଲିପ୍‌ରୁ ଜାଣୁଛି । ସୁଧମୂଳ ହୋଇ ଆହୁରି ଅଧିକ ମିଳିବ । ଦୁଇ ତିନିଟା ଇନ୍‌ସ୍ୟୁରାନ୍ସ କରିଛି । ଗୋଟାକରେ ତୁମକୁ 'ନମିନି' ରଖିଛି; ଆଉ ଗୋଟାକରେ ବୋଉକୁ, ତୃତୀୟରେ ବଡ଼ ଭାଇ କି । ଯଦି ମୋର କ'ଣ ଘଟିଯାଏ, ତେବେ ତୁମେମାନେ ଚଳିବାକୁ କିଛି ଜମା ଟଙ୍କା ପାଇଯିବ । ବାପା ଜିଭ କାମୁଡ଼ି ପକାଇ କହିଲେ – ଏମିତି ଅଶୁଭ କଥା କାହିଁକି କହୁଛୁ, ଜିତ୍ ! ଆଉ କହିବୁ ନାହିଁ । ଆରେ, ଆମେ ବାପା ବୋଉ ତ ଆଉ ବେଶୀ ହେଲେ ୫/୬ ବର୍ଷ ଏ ସଂସାର ଜଞ୍ଜାଳରେ ଘାଣ୍ଟି ହେବୁ... । ଥାଉ, ସେ କଥା, ଏଇଠି ରଖ ।

ସନ୍ଧ୍ୟାରେ ଆଉ ଜଣେ ସାଙ୍ଗ ଜେ.ଏ.ଓ. ଗୋରା ଚାନ୍ଦଙ୍କ ବସାକୁ ଯିବା ପାଇଁ ବାପାଙ୍କୁ କହିଲେ । ବାପ ପୁଅ ସନ୍ଧ୍ୟା ସାତଟାରେ ଚାନ୍ଦଙ୍କ ବସାକୁ ଗଲେ । ଚାନ୍ଦ ପ୍ରସେନ୍‌ଜିତ୍‌ଙ୍କ ପରି ଯୁବକ । ବୟସରେ ଦୁଇ ବର୍ଷ ବଡ଼ ହେବେ । ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କୁ ଦେଖି ଘର ଭିତରକୁ ପାଛୋଟି ନେଲେ । ଚାନ୍ଦଙ୍କ ପତ୍ନୀ ମଉସାଙ୍କ ପାଦ ଛୁଇଁ ମୁଣ୍ଡିଆ ମାରିଲେ । ଗୋରା ଚାନ୍ଦ ମୁଣ୍ଡ ନୁଆଁଇ ପ୍ରଣାମ କଲେ । ଚା', ଜଳଖିଆ ବ୍ୟବସ୍ଥା କଲେ । ପ୍ରସେନ୍‌ଜିତ୍ ନାହିଁ ନାହିଁ କଲେ – 'ନାଇଁ, ଚାନ୍ଦ ଭାଇ, ଏଇନେ ଜଳଖିଆ କରି ଆସିଛୁଁ । ବାପା ତ ତାଙ୍କ ଯୁବକ ସମୟରେ ଚାଳିଶ ବର୍ଷ ତଳେ ବିଡ଼ିଓ ଥିଲେ । ଏଗ୍ରିକଲ୍‌ଚରାଲ ସ୍କିମ୍ କାର୍ଯ୍ୟକାରୀ କରୁଥିଲେ । ଏବେ କ'ଣ ସ୍କିମ୍ କାର୍ଯ୍ୟକାରୀ ହେଉଛି, ଜାଣିବାକୁ ଆସିଲେ ।'

ବିଭିନ୍ନ ସ୍କିମ୍ ବିଷୟରେ ଆଲୋଚନା କଲେ । ପ୍ରାୟ ଦେଢ଼ ଘଣ୍ଟା ପରେ ଫେରିଲେ । ଫେରିଲାବେଳକୁ ସେଇ ଭଦ୍ର ଲୋକ ହାବୁଡ଼େ ପଡ଼ିଲେ । ସେ

ଆସିଥିଲେ ପ୍ରସେନ୍‌ଜିତ୍‌ଙ୍କ ଘରକୁ । ଦେଖିଲେ ବାପ ପୁଅ ନାହାନ୍ତି । ଯାଇଛନ୍ତି, ପ୍ରସେନ୍‌ଜିତ୍‌ଙ୍କ ସାଙ୍ଗ ଜେଏଓ ଚାନ୍ଦଙ୍କ ଘରକୁ । ଅପେକ୍ଷା କରିଥିଲେ । ପହଞ୍ଚୁ ପହଞ୍ଚୁ ପଚାରିଲେ - ବାପା, କୁଆଡ଼େ ଯାଇଥିଲେ ? ପ୍ରସେନ୍‌ଜିତ୍ ବାପାଙ୍କ ତରଫରୁ କହିଲେ - ହଁ, ବାପାଙ୍କୁ ନେଇ ଚାନ୍ଦଙ୍କ ଘରକୁ ଯାଇଥିଲି ସୌଜନ୍ୟ ସାକ୍ଷାତ ପାଇଁ । ଭଦ୍ରଲୋକ ସାଙ୍ଗେ ସାଙ୍ଗେ କହିଲେ - ସେଟା ଗୋଟାଏ ଖରାପ ଲୋକ, ମଦ ପିଏ । ତା' ସାଙ୍ଗେ କ'ଣ ଆଲୋଚନା ପାଇଁ ଯାଇଥିଲ ? ପ୍ରସେନ୍‌ଜିତ୍‌ଙ୍କ ବାପାଙ୍କର ଧୈର୍ଯ୍ୟ ଚ୍ୟୁତି ଘଟିଲା । କହିଲେ, ବାବୁ କିଏ ନିଶା ସେବନ କରୁ ନି ? ତୁମେ ଜଣେ ଶିକ୍ଷକ ହୋଇ ଚେନ୍ ସ୍ମୋକର୍ ! ପ୍ରସେନ୍‌ଜିତ୍ ଓ ଗୋରାଚାନ୍ଦଙ୍କର ଇମେଡିଏଟ୍ ବସ୍ ବି ହେଉଛନ୍ତି - ନିଶାଖୋର୍ । ମଝିରେ ମଝିରେ ଟିକିଏ ହ୍ୱିସ୍କି ବ୍ୟବହାର କରନ୍ତି ବୋଲି ଜିତ୍ କହେ । ସେ ମଦ ଖାଆନ୍ତି ବୋଲି କ'ଣ, ତାଙ୍କ ସହ ଜିତ୍ କାମ କରିବ ନାହିଁ ? ତାଙ୍କ ପାଖ ମାଡ଼ିବ ନାହିଁ ? ଟିକିଏ ଡାଇଭରସନ୍ ପାଇଁ, ସ୍ମାର୍ଟ ହେବା ପାଇଁ ଏମିତି ଅଭ୍ୟାସଥାଏ ଫିଲ୍ଡ ଅଫିସରମାନଙ୍କର । ଆର୍ମିରେ ତ ଯବାନ୍ ଓ ଅଫିସର୍‌ମାନଙ୍କୁ ୱାଇନ୍ ପ୍ରତ୍ୟହ ଦେବା ବ୍ୟବସ୍ଥା ଅଛି । ତୁମେ ବାବୁ, ଏପରି କ'ଣ କହୁଛ । ୟୁ ସୁଡ୍ ନଟ କମେଣ୍ଟ୍ ଅନ୍ ଦ ପର୍ସନାଲ୍ ମ୍ୟାଟରସ୍ ଅଫ୍ ଜିତ୍ ।'' ଭଦ୍ରଲୋକ ଚୁପ୍ ହୋଇ ନିଷ୍ପ୍ରଭ ହୋଇଗଲେ । ପ୍ରସେନ୍‌ଜିତ୍‌ଙ୍କୁ ବାହାରକୁ ଡାକି ବାପା ଶୁଣିଲା ଭଳି ଉଚ୍ଚ ସ୍ୱରରେ କହିଲେ - ଆରେ ଜିତ୍, ଚାନ୍ଦଟା ଘୋଡ଼ା ମଦୁଆ । ତା ସାଙ୍ଗରେ ମିଶିଲେ ତୁ ବି ସେମିତି ହୋଇଯିବୁ । ସେଇଥିପାଇଁ କହିଲି । ହେଲେ, ବାପା ଓଲଟା ବୁଝିଲେ । ପ୍ରସେନ୍‌ଜିତ୍ କହିଲେ - ଭାଇ ତୁମେ ଯାଅ । ସେ କଥା ଆଉ ପକାଅ ନାହିଁ । ଭଦ୍ରଲୋକ ଅପ୍ରସ୍ତୁତ ଅବସ୍ଥାରେ ମଟର ସାଇକେଲ୍‌ରେ ନିଜ ଘର ଅଭିମୁଖେ ବାହାରିଗଲେ ।

ଜିତ୍ ଘର ଭିତରକୁ ଫେରି ଆସିଲେ । ବାପାଙ୍କ ମୁହଁକୁ ଚାହିଁ ଦେଖିଲେ, ତାଙ୍କ ମୁହଁରୁ ବିରକ୍ତି ଓ ଉତ୍ତେଜନା ଭାବ କମିନାହିଁ । ଗୀତାଙ୍କୁ ଲକ୍ଷ୍ୟ କରି କହିଲେ - ଗୀତା, ଗୋରା ଚାନ୍ଦ ଘରକୁ ଯାଇଥିଲୁ, ଦେଢ଼ କି.ମି. ଯିବା ଆଉ ଫେରିବାରେ ବାପା କ୍ଳାନ୍ତ ହୋଇ ପଡ଼ିଛନ୍ତି । ଟିକିଏ କଫି କର । ବାପାଙ୍କୁ ଲକ୍ଷ୍ୟ କରି କହିଲେ - ବାପା, ତୁମ ସମୟ ଅଲଗାଥିଲା । ଏବେ ସମୟ ବଦଳିଗଲାଣି । ସେଦିନ ତୁମେ ବିଭୁଭାଇ ଶଶୁର ଘରୁ ଆସିଥିବା ଲଡୁରୁ ପାଞ୍ଚୋଟି ସାଙ୍ଗରେ ଆଣିଥିଲ । ସେଥିରୁ ଆମ ପାଇଁ ଦୁଇଟି ରଖି ତିନିଟି ପ୍ରଦୋଷ ଭାଇଙ୍କ ଘରେ ଦେବା ପାଇଁ ପଠାଇଲ । ନୀନା ଅପା ମାତ୍ର ତିନୋଟି ଲଡୁ ଦେଖି ମୁହଁ ଏମିତି କଲା ଯେ, ମୋତେ ଜଣାଗଲା, ଏତେ କମ୍ ମିଠା ନେଇ ଦବା, ତାଙ୍କୁ ଅପମାନ୍ ଦେଲାପରି ହେଲା । ସେ କଥା, ବାପା ତୁମକୁ

କହି ନଥିଲି । ଆଜି ଘଟଣାରୁ କହିବାକୁ ବାଧ ହେଉଛି । ବାପା କହିଲେ - ଆରେ, ମୁଁ କ'ଣ କିଣି କରି ଲଡ୍ଡୁ ପଠାଇଥିଲି । ମୋ ଭାଣେଜୀ ବୋହୂ ଘରୁ ଆସିଥିବା ବେଭାର ଲଡ୍ଡୁରୁ ପାଞ୍ଚୋଟି ତମ ପାଇଁ ଆଣିଥିଲି । ଦୁଇଟି ତୁମ ଦୁହିଁଙ୍କ ପାଇଁ ରଖି ବାକି ତିନୋଟି ସେମାନଙ୍କ ପାଇଁ ପଠାଇଥିଲି । ଆରେ, ଲଡୁର ସଂଖ୍ୟା ଓ ପରିମାଣଟା ବଡ଼ ନୁହେଁ । ବଡ଼ ହେଉଛି, ହୃଦୟ, ସ୍ନେହ, ଶ୍ରଦ୍ଧା । ଆଜିକାଲି ବନ୍ଧୁତାରୁ ସ୍ନେହ ଶ୍ରଦ୍ଧା ଆନ୍ତରିକତା କମି ଯାଉଛି । ପ୍ରସେନ୍‌ଜିତ୍ କହିଲେ - ବାପା, ତୁମ ଭାବନା ସିନା ଏପରି; ସେମାନେ ଜାଣିବେ କିପରି ? ତେଣୁ ସେ ଦିନ ସେ ଲଡ୍ଡୁ ନେଇ ଯିବାକୁ ଭିତରେ ଭିତରେ ଅମଙ୍ଗ ହେଉଥିଲି । ବାପା କହିଲେ - ତେବେ, ଆଉ କେଜିଏ ରସଗୋଲା କି ଛେନା ପୋଡ଼ କିଣି ନେଇ ସେ ଲଡ୍ଡୁ ସହିତ ଦେଇ ଦେଲୁନୁ ? ଜିତ୍ କହିଲେ - ବାପା, ସେପରି କରିଥିଲେ, ତୁମ ଶ୍ରଦ୍ଧା ଓ ଆନ୍ତରିକତା ପ୍ରତି ଅସମ୍ମାନ ହୋଇଥାନ୍ତା । ଗୀତା, ଏହା ମଧ୍ୟରେ କଫିକରି ଆଣିଦେଲେ । ବାପ ପୁଅ ବସି କଫି ସେବନ କଲେ ।

ତହିଁ ଆରଦିନ ବାପା ଅପରାହ୍ନରେ ଜିତ୍‌ଙ୍କୁ କହିଲେ - ଆରେ, ଫ୍ରିଜ୍, ଗ୍ରାଇଣ୍ଡର୍ ପ୍ରଭୃତି କିଣିବା ପାଇଁ ଭବାନୀପୁରମ୍ ଯିବା ପୂର୍ବରୁ, ଚାଲ, କାଲି ଯିବା ଜୟପୁର । ସେଠାରେ ହେଡ୍ ଅଫିସ୍‌ରେ ତୋ ବକେୟା ଦରମା ପ୍ରାପ୍ତି ଓ ଇନ୍‌କ୍ରିମେଣ୍ଟ ସାଙ୍ଗସାନ୍ ସମ୍ପର୍କରେ ଅଫିସର୍ ଓ ସଂପୃକ୍ତ ଷ୍ଟାଫ୍‌ଙ୍କ ସହିତ କଥାବାର୍ତ୍ତା କରି ଫେରିବା । ଜୟପୁରରେ ବି ଫ୍ରିଜ୍, ଗ୍ରାଇଣ୍ଡର ଆଦି ଦର କିପରି ଅଛି, ବୁଝି ଆସିବା । ପ୍ରସେନ୍‌ଜିତ୍ ହଁ, ଭରିଲେ । ମାତ୍ର ତା ଆରଦିନ ପ୍ରସେନ୍‌ଜିତ୍‌ଙ୍କ ନିଦ ଭାଙ୍ଗିଲାବେଳକୁ ଦିନ ୧୦ ଟା ହେଲା । ଜୟପୁରକୁ ବସ୍ କିନ୍ତୁ ସକାଳ ସାତଟାରେ ଫିଟିଯାଏ । ବାପା ପାହାନ୍ତାରୁ ଉଠି ନିଜ ନିତ୍ୟକର୍ମ ସାରିଥିଲେ ଜୟପୁର ଯିବା ପାଇଁ । ମାତ୍ର ଜିତ୍‌ଙ୍କୁ ଉଠାଇବାକୁ ଉଚିତ ମନେ କଲେ ନାହିଁ । ପୁଅବୋହୂ ଏକାଠି ଅଛନ୍ତି, କିପରି ଡାକିବେ ?

ତା' ଆର ଦିନକୁ ଜୟପୁର ଯିବାପାଇଁ ସ୍ଥିର କଲେ । ସେ ଦିନ ବି ଜିତ୍ ଡେରିରେ ଉଠିଲେ । ତେଣୁ ବାପା କହିଲେ - ଆରେ, ଆଜି ରାତିରେ ୯ଟାରୁ ଶୋଇ ପଡ଼ିବୁ । ସକାଳ ଛଅଟାରେ ନିଦ ଭାଙ୍ଗିଯିବ । ଜୟପୁର ବସରେ ସାତଟାରେ ବାହାରିଯିବା । ପ୍ରସେନ୍‌ଜିତ୍ ମୁଣ୍ଡ ହଲାଇ ସମ୍ମତି ଦେଲେ । ମାତ୍ର ଦୁଇ ଦିନ ଠିକ୍ ସମୟରେ ଉଠି ନପାରିବାରୁ ବାପାଙ୍କ ନିକଟରେ ନିଜକୁ ଦୋଷୀ ବୋଲି ଭାବିଲେ । ମନ ଟିକିଏ ଉଣା କରି ମଉନ ରହିଲେ ।

ଜେ.ଏ.ଓ. ଚାନ୍ଦବାବୁଙ୍କ ଘରକୁ ଯିବା ସମ୍ପର୍କରେ ସେ ଭଦ୍ର ଲୋକଙ୍କ ସହ ବାପା ଟିକିଏ କଡ଼ା ଭାଷାରେ କଥା ହୋଇଥିବାରୁ ବୋହୂକୁ କହିଲେ - ମାଆ ଗୀତା,

ଆଜି ଟିକିଏ ମାଂସ ଆଣି ରନ୍ଧାବଢ଼ା କର । ପ୍ରଦୋଷଙ୍କୁ ଡାକିବା, ସମସ୍ତେ ଏକାଠି ବସି ଖାଇବା । ବାପାଙ୍କ ପ୍ରସ୍ତାବରେ ପ୍ରସେନ୍‌ଜିତ୍ ମାଂସ କିଣି ଆଣି ଗୀତାଙ୍କୁ ଦେଲେ । କାଳେ ପ୍ରଦୋଷ ଭାଇ କୁଆଡ଼େ ଚାଲିଯିବେ ବୋଲି ଭାବି ତାଙ୍କ ଘରକୁ ଯାଇ ମଧ୍ୟାହ୍ନ ଭୋଜନ ନିମନ୍ତେ ନିମନ୍ତ୍ରଣ କରି ଆସିଲେ । ପ୍ରଦୋଷଙ୍କ ମନରେ ସେ ଦିନର ଘଟଣା ନେଇ ରୋଷ ଥିଲେ ମଧ୍ୟ ବାହ୍ୟ ଶିଷ୍ଟାଚାର ଦୃଷ୍ଟିରୁ ହଁ ମାରିଲେ ।

ରୋଷେଇ ବାସ ସରିଲା । ପ୍ରଦୋଷଙ୍କୁ ଅପେକ୍ଷା କରିଛନ୍ତି । ୨ଟା ବାଜିଲା; ପ୍ରଦୋଷ ତାଙ୍କ ଝିଅକୁ ପଠାଇଲେ । ଝିଅ ଖବର ଦେଲା - 'ଅଙ୍କଲ୍, ଆପଣଙ୍କ ଗାଁରୁ ଅରଜେଣ୍ଟ ଫୋନ୍ ଆସିଛି ଅଜାଙ୍କ ପାଖକୁ' । ଅର୍ଥର ଏପରି ଅନାଟନ ଯେ, ପ୍ରସେନ୍‌ଜିତ୍ ମୋବାଇଲ୍ ଫୋନ୍‌ଟିଏ ବି କରି ପାରି ନାହାନ୍ତି । ବୁଥ୍‌ରୁ ବାପା ବୋଉଙ୍କୁ ଫୋନ୍ କରି କଥା ହୁଅନ୍ତି । ଅରଜେଣ୍ଟ କେସ୍‌ରେ ଭଦ୍ରଲୋକ - ପ୍ରଦୋଷଙ୍କ ଫୋନ୍‌କୁ ଫୋନ୍ କରିବା ପାଇଁ ଜଣାଶୁଣା ବନ୍ଧୁବାନ୍ଧବ ଓ ସାଙ୍ଗମାନଙ୍କୁ ଜଣାଇଛନ୍ତି । ତାହା ହିଁ ତାଙ୍କ ପାଇଁ କଣ୍ଟାକ୍ଟ ଫୋନ୍ ତେଣୁ ସେହି ଫୋନ୍‌କୁ ଗାଁରୁ ଫୋନ ଆସିଛି । ବାପା ଫୋନ୍ ଧରିବାକୁ ଗଲେ । ଗାଁରୁ ପ୍ରସେନ୍‌ଜିତ୍‌ଙ୍କ ସାନ କକା ଫୋନ୍ କରିଛନ୍ତି - ନନା, ଆଜି ଏକ୍ସପ୍ରେସ୍‌ରେ ଫେରି ଆସିବ । କାଲି କମ୍ପେନ୍‌ସନ୍ ଟଙ୍କା ମିଳିବାର ଅଛି ।

ବାପା - କେଉଁ କମ୍ପେନ୍‌ସେସନ୍ ଟଙ୍କା ?

ସାନ କକା - ସେ ଯେଉଁ ଡାବା ଜାଗା ଆମର, ନ୍ୟାସ୍‌ନାଲ୍ ହାଇୱେରେ ଯାଇଥିଲା, ତା'ର କମ୍ପେନ୍‌ସନ୍ ଟଙ୍କା ଦେଢ଼ ବର୍ଷ ଲାଗିଲାଗି ଆସନ୍ତା କାଲି ମିଳିବାର ଅଛି । ତମେ ବଡ଼ଭାଇ । ତମେ ଆସି ଦସ୍ତଖତ ନ ଦେଲେ ସେ ଟଙ୍କା ମିଳିବ ନାହିଁ । ଡେରି ହେଲେ, ପୁଣି କମ୍ପ୍ଲିକେଟେଡ୍ ହୋଇଯିବ ।

ବାପା - ଆରେ, ଆଗରୁ କହିଲ ନାହିଁ, ମୁଁ ତୋତେ ଅଥରାଇଜ୍ କରି ଆସିଥାନ୍ତି । ଏଠାରେ ଦି' ଚାରି ଦିନ ଜିତ୍ କାମରେ ରହିବାର ଅଛି । କାଲି ତ ଜୟପୁର ଯିବି, ତା'ର ବକେୟା ମେଡ଼ିକାଲ୍ ଲିଭ୍ ଦରମା ମିଳିବା ବିଷୟରେ ତା ଉପର ହାକିମ୍‌ଙ୍କସହ କଥାବାର୍ତ୍ତା କରିବାକୁ । ତା' ଆରଦିନ ଭବାନୀପୁରମ୍ ଯାଇଥାନ୍ତୁ ।

ସାନକକା - ନାଇଁ ନନା, ସେ କାମ ଆଉଥରେ ଗଲେ କରିବ । ଏବେ ଚାଲିଆସ । କାଲି ଟଙ୍କାଟା ମିଳିଗଲେ, ତମେ ପୁଣି ଜିତ୍ ପାଖକୁ ଯାଇ ପନ୍ଦର ଦିନ ରହିବ, ତା ବାକି କାମ ସାରି ଫେରିବ ।

ବାପା - ଆରେ, ନ ଗଲେ ଚଳିବ ନାଇଁ ?

ସାନକକା - ନାଇଁ, ଆଜି ସନ୍ଧ୍ୟା ଟ୍ରେନ୍‌ରେ ଚାଲି ଆସ । ନ ଆସିଲେ ସବୁ ଅସୁବିଧା ହୋଇଯିବ । ମୁଣ୍ଡ ଉପରେ ଝିଅୀର ବିଭାଘର । ଟଙ୍କାଟା ମିଳଗଲେ କାମରେ ଲାଗିବ ।

ବାପା - ଏତକ ଶୁଣିଲା ପରେ ନିଷ୍ପତ୍ତି ନେଲେ, ସନ୍ଧ୍ୟାରେ ଟ୍ରେନ୍‌ଯୋଗେ ଭୁବନେଶ୍ୱର ଫେରିଯିବେ । ପ୍ରସେନ୍‌ଜିତ୍ ସେତେବେଳେ ଅଫିସ୍ ଯାଇଥିଲେ । ସେ ଭଦ୍ରଲୋକ ଯାଇ କହିଲେ, ଜିତ୍ ତୁରନ୍ତ ଆସ । ତମ ଗାଁରୁ ଫୋନ୍ ଆସିଛି । ବାପା ଆଜି ସନ୍ଧ୍ୟା ଏକ୍ସପ୍ରେସ୍‌ରେ ଭୁବନେଶ୍ୱର ଫେରିଯିବେ । ଗୋଟାଏ ଅର୍‌ଜେଣ୍ଟ୍ କଲ୍ ତୁମ କକା ଗାଁରୁ କରିଥିଲେ । ପ୍ରସେନ୍‌ଜିତ୍ କହିଲେ - ବାପା ନ ଗଲେ ଚଳନ୍ତା ନାହିଁ ?

ଭଦ୍ରଲୋକ - ନା, ବାପା ଯିବାକୁ ସ୍ଥିର କରି ସାରିଲେଣି । ମୁନିଗୁଡ଼ା ଷ୍ଟେସନକୁ ଫୋନ୍ କରି ସିନିୟର୍ ସିଟିଜନ୍ ହେତୁ ବାପାଙ୍କ ପାଇଁ ଗୋଟାଏ ସ୍ଲିପର୍ ସିଟ୍ ରିଜରଭେସନ୍ ପାଇଁ ଆସିଷ୍ଟାଣ୍ଟ ଷ୍ଟେସନ୍ ମାଷ୍ଟରଙ୍କୁ କହି ଦେଇଛି । ସେ ଗୋଟିଏ ସିଟ୍ ରିଜର୍ଭ କରି ରଖିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ତମେ ଅଫିସ୍‌ରୁ ଗଲେ, ବାପାଙ୍କୁ ମୁଁ ହିରୋହୋଣ୍ଡାରେ ନେଇ ମୁନିଗୁଡ଼ା ବାହାରିବି । ପ୍ରସେନ୍‌ଜିତ୍ ବଡ଼ ଉଦାସ ମନରେ ବସାକୁ ଫେରିଲେ । ସେତେବେଳକୁ ବାପା ପୋଷାକ ପିନ୍ଧି ହାଣ୍ଡ୍ ବ୍ୟାଗ୍ ସଜାଡୁଛନ୍ତି । ପ୍ରସେନ୍‌ଜିତ୍ ପହଞ୍ଚି ପଚାରିଲେ - ବାପା କ'ଣ ଏତେ ଜରୁରୀ ପଡ଼ିଲା ଯେ, ଏଇନା ଫେରିଯିବାକୁ ବାହାରିଛ ? ହଁରେ ବାପା, ତୋ ସାନ କକା ଫୋନ୍ କରିଛି । କାଲି ସେ ଢାବା ସମ୍ପର୍କୀୟ ନ୍ୟାସନାଲ୍ ହାଇୱେ ଅଥରିଟିଙ୍କଠାରୁ କମ୍ପେନସେସନ୍ ଟଙ୍କା ମିଳିବ । ତେଣୁ ମୁଁ ଫେରିଯିବା ଜରୁରୀ । ତୁମେମାନେ ଭବାନୀପୁରମ୍ ଯାଇ ଫ୍ରିଜ୍, ଗ୍ରାଇଣ୍ଡର୍ ଆଦି କିଣି ଆଣିବ । ମୁଁ ଯଥା ଶୀଘ୍ର ସେ·ପଟ କାମ ସାରି ଫେରି ଆସିବି । ତୋ ହେଡ୍ ଅଫିସ୍‌କୁ ଯାଇ ତୋ ପେଣ୍ଡିଂ କାମ କରିବା । ଏଥର ଆସିଲେ ନିଶ୍ଚେ ଯିବା । ଗୀତା ସହିତ ଭଲରେ ଚଳିବୁ ।

ବାପା ମଟର ସାଇକେଲ କ୍ୟାରିୟରରେ ବସିବାକୁ ଯିବାବେଳେ ଜିତ୍‌ଙ୍କ ଆଖିରୁ ଦୁଇଟୋପା ଲୁହ ଖସି ପଡ଼ିଲା । ଅବଶ୍ୟ ତାହା ବାପାଙ୍କ ନଜରରେ ପଡ଼ିଲା ନାହିଁ । ସେ ଭଦ୍ରଲୋକ ମଟର ସାଇକେଲ୍ ଷ୍ଟାର୍ଟ୍ କରି ମୁନିଗୁଡ଼ା ଅଭିମୁଖେ ଆଗେଇ ଚାଲିଲେ । ଗୀତା ଜିତ୍‌ଙ୍କୁ କହୁଥାନ୍ତି - ତୁମେ ଯାଉନ, ବାପାଙ୍କୁ ଗାଡ଼ିରେ ଚଢ଼ାଇ 'ସି ଅଫ୍' କରି ଆସିବ ? ବାପା - କହିଲେ, ନାଇଁ ନାଇଁ, ଘାଟି ରାସ୍ତା ସେ କାହିଁକି ହଇରାଣ ହୋଇ ଆସିବ ? ଗାଡ଼ି ଛାଡ଼ିଲା ପରେ ଘାଟି ରାସ୍ତାରେ ଫେରି ଏଠାରେ

ପହଞ୍ଚିଲା ବେଳକୁ ରାତି ଦଶଟା ହେବ । ସେ ନ ଯାଉ ।' ମଟର ସାଇକେଲ୍ ପ୍ରସେନ୍‌ଜିତ୍‌ଙ୍କ ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇଗଲା... । ବାପା ଚାଲିଗଲେ ଅଚାନକ ଭାବେ ଜରୁରୀ କାମରେ ଗାଁକୁ । ପ୍ରସେନ୍‌ଜିତ୍ ନିଃସଙ୍ଗ ହୋଇଗଲେ । ସେ ଅସହାୟ ଅସହାୟ ଅନୁଭବ କଲେ । ହତାଶାର ଘନ ବାଦଲ ତାଙ୍କ ମଥାନରେ ଓହ୍ଲାଇ ଆସିଲା ।

ଘରେ ପହଞ୍ଚିବା ମାତ୍ରେ ବାପା ଗାଁକୁ ଫୋନ୍ କଲେ । ପ୍ରସେନ୍‌ଜିତଙ୍କ ସାନ କକା ଧରିଲେ । ବାପା ପଚାରିଲେ – ଆରେ କୁନା, ମୁଁ ଭୁବନେଶ୍ୱରରେ ପହଞ୍ଚିଗଲି । ତୁମ୍ଭେମାନେ କେତେବେଳେ ଆସିବ ? କେତେବେଳେ କମ୍ପେନ୍‌ସେସନ୍ ଅଫିସ୍‌କୁ ଯିବା ?

ସାନ କକା – ନନା ନମସ୍କାର ! ଆଜି ତହସିଲ୍‌ଦାର୍‌ଙ୍କଠାରୁ ଗୋଟାଏ ଡକୁମେଣ୍ଟ ମିଳିବ । ତାହା ପାଇବା ସଙ୍ଗେ ସଙ୍ଗେ ଆମେ ଯିବୁ ।

ବାପା – ଏତକ ବାକିଥିଲା ତ, ମୋତେ କାହିଁକି ଡାକି ଆଣିଲ ? ଜିତ୍ ଚାହୁଁଥିଲା, ମୁଁ ତା ପାଖରେ ରହି ତା' ବାକି କାମ କରାଇ ଫେରିଥାନ୍ତି ? ବିଚରା ମୁଁ ଆସିଲାବେଳେ ବଡ଼ ମନ ଦୁଃଖ କଲା । ହେଉ, ମୁଁ ଅପେକ୍ଷା କରୁଛି । ଯେତେବେଳେ ତହସିଲ ଅଫିସ୍‌ରୁ କାଗଜ ମିଳିବ, ମୋତେ କମ୍ପେନ୍‌ସେନ୍ ଅଫିସ୍‌କୁ ଯିବା ପାଇଁ ଫୋନ୍ କରିବ ।

ଏହା ପରେ ପରେ ଆଉ ଏକ ଲଙ୍ଗ୍ ରିଙ୍ଗ୍ ଆସିଲା । ସମୟ ଏଗାରଟା କି ସାଢ଼େ ଏଗାରଟା ହେବ । ବାପା ଫୋନ୍ ଧରିଲେ । 'ବାପା, ମୁଁ ଗୀତା କହୁଛି, ନମସ୍କାର ! ଯେଉଁ ପରଟା, ତରକାରୀ ଦେଇଥିଲି, ଖାଇଲେ ନା ? ହଁ ମାଆ, ତରକାରୀ ତକ ଆଉ ପଟେ ପରଟା ଖାଇଲି । ଆଉ ଏ ବୁଢ଼ା ପେଟରେ ଖାଦ୍ୟ ଯିବ ନା ? ତୁ ଏକାବେଳକେ ଚାରିଟା ପରଟା ଦେଇଥିଲୁ ? ଆଉ ଜିତ୍ କିପରି ଅଛି ? 'ସେ ଆପଣ ଗଲାପରେ କାନ୍ଦିଲେ ।' ବାପା (ବାଷ୍ପରୁଦ୍ଧ କଣ୍ଠରେ) ହଁ, କାନ୍ଦିଥିବ... ସେ ମୋତେ ଭାରି ଭଲପାଏ... । ମୋର ସବୁଠାରୁ ଗେହ୍ଲା ପୁଅ । କୋଳପୋଛା ପୁଅନା... ।' ବାପାଙ୍କ ଆଖିକୁ ଲୁହ ଚାଲି ଆସିଲା ।

ବାପା ଚାଲିଗଲା ପରେ, ପ୍ରସେନ୍‌ଜିତ୍ ଏକୁଟିଆ ଏକୁଟିଆ ଅନୁଭବ କଲେ ମଧ୍ୟ ପତ୍ନୀଙ୍କ ସାନ ଭଉଣୀ ଓ ଝିଆରୀଙ୍କ ସହ ବହୁତ ମିଳିମିଶି କଥା ହେଲେ । ଶାଳୀ ଚାହିଁବାରୁ ଚାଲିଚାଲି ମନ୍ଦିରକୁ ଗଲେ । ଝିଆରୀକୁ ମଧ୍ୟ ବୁଲାଇ ନେଲେ । କେଜାଣି କାହିଁକି କହିଲେ, ଆଜି ରାତିରେ ସମସ୍ତେ ଗୋଟିଏ ଘରେ ଶୋଇବା । ସେ ଭଦ୍ର

ଲୋକ ଯିବା ଆସିବା କରୁଥାନ୍ତି । ତାଙ୍କ ଯିବା ଆସିବା ପ୍ରସେନ୍‌ଜିତ୍‌ଙ୍କୁ ଭଲ ଲାଗୁ ନଥାଏ । ମନର ପରିବର୍ତ୍ତନ ପାଇଁ ସାନ ଭଉଣୀ ସିମୀ, ନିମୀ ସହ ଫୋନ୍‌ରେ ଭାରି ମନ ଖୋଲା କଥା ହେଲେ । ଜିତ୍ ଥିଲେ ସାନ ଭାଇ ଭଉଣୀମାନଙ୍କ ପ୍ରତି ବଡ଼ ସ୍ନେହୀ । ଶଳା ଦୁହିଁଙ୍କ ସହ ମଧ ବହୁ ସମୟଧରି ଫୋନ୍‌ରେ କଥା ହେଲେ । ଗୋଟିଏ ଦିନରେ ଏତେ ଲୋକଙ୍କ ସହ ଫୋନ୍‌ରେ କଥା ହେଲେ ଯେ, ସତେ ଯେପରି ଆଉ କେତେଦିନ ପାଇଁ କଥା ହେବାକୁ ପଡ଼ିବ ନାହିଁ ।

ଡିସେମ୍ବର ୭ ତାରିଖ ରାତି । ରାତ୍ରିଭୋଜନ କରିବାକୁ ବସିଛନ୍ତି ପ୍ରସନେ୍‌ଜିତ୍ । ତଳେ ବସି ଖାଉଛନ୍ତି । ପତ୍ନୀ ଗୀତା ବସିଛନ୍ତି ଖଟ ଉପରେ । ସାନ ଶାଳୀ ଓ ଝିଅାରୀ ପାଖରେ ବସିଛନ୍ତି । କାହିଁକି ମନକୁ ଆସିଲା, ଗୀତାଙ୍କୁ ପଚାରି ଦେଲେ – ତମେ କାହିଁକି ସବୁବେଳେ କହୁଛ, 'ମୁଁ ବୋଉଙ୍କୁ ଲାଇକ୍ କରେ ନାହିଁ ବୋଲି' ? ଗୀତା ଆହତ ସିଂହୀ ପରି ଗର୍ଜି ଉଠିଲେ – ହଁ, ଲାଇକ୍ କରେ ନାହିଁ । କରେ ନାହିଁ, କରେ ନାହିଁ । କରିବି ନାହିଁ ମଧ ।' ସ୍ତ୍ରୀଙ୍କଠାରୁ ବୋଉଙ୍କର ନିନ୍ଦା ବାରମ୍ବାର ଶୁଣି ଶୁଣି ପ୍ରସେନ୍‌ଜିତ୍ ଅତିଷ୍ଠ ହୋଇ ଯାଇଥିଲେ । ଆଜିର ଏ ଔଦ୍ଧତ୍ୟପୂର୍ଣ୍ଣ ବ୍ୟବହାରରେ ତାଙ୍କର ମସ୍ତିଷ୍କ ବିଗିଡ଼ିଗଲା । ଛାତି ଫାଟିଗଲା ପରି ଲାଗିଲା । ସେ ଢକ୍ ଢକ୍ କରି ଗିଲାସେ ପାଣି ପିଇ ଉଠି ପଡ଼ିଲେ । କିନ୍ତୁ ପୁଣି ଦମ୍‌କିନା କଚାଡ଼ି ହୋଇ ବସି ପଡ଼ିଲେ । ବାତାଳଙ୍କ ପରି ଇଆଡୁ ସିଆଡୁ କହିଲେ । ନମୀ ଅଛି ନା, ଗଲାଣି ? ଶଶୀ କୁଆଡ଼େ ଗଲା ? ସମସ୍ତେ ପାଖରେ ଅଛନ୍ତି, ଅଥଚ ତାଙ୍କୁ ସବୁ ଅନ୍ଧାର ଦିଶିଲା ।

ପ୍ରସେନ୍‌ଜିତ୍‌ଙ୍କ ଏ ଅବସ୍ଥା ଦେଖି ପତ୍ନୀ-ଗୀତା, ଶାଳୀ ଓ ଝିଅାରୀ ଟେକି ନେଇ ଖଟ ଉପରେ ଶୁଆଇ ଦେଇ ମୁଣ୍ଡ, ଗୋଡ଼, ହାତ ଘଷିବାକୁ ଲାଗିଲେ । ସେ ଭଦ୍ର ଲୋକଙ୍କ ହାତରେ ଡାକ୍ତରଙ୍କୁ ଡକାଇଲେ । ଡାକ୍ତର ଦେଖିଲେ, ଆଗରୁ ପ୍ରସେନ୍‌ଜିତ୍ ବିଶେଷଜ୍ଞ ଡାକ୍ତରଙ୍କ ଦ୍ୱାରା ଚିକିତ୍ସାରେ ଅଛନ୍ତି । ତେଣୁ ସେ ପ୍ରେସ୍‌କ୍ରିପ୍‌ସନ୍ ଉପରେ ଆଗନ୍ତୁକ ଡାକ୍ତରଙ୍କ ଆଉ କିଛି କରିବାର ନାହିଁ । ବାପାଙ୍କ ପାଖକୁ ଫୋନ୍ କରି ପ୍ରସେନ୍‌ଜିତ୍‌ଙ୍କ ଅବସ୍ଥା ଜଣାଇ ଦିଆଗଲା । ବାପା ଆଶ୍ଚର୍ଯ୍ୟ ହୋଇଗଲେ, ସେ ତ ଆସିବା ଦିନ ଜିତ୍ ବହୁତ ଭଲ ଥିଲା । କାହିଁକି ତା' ଅବସ୍ଥା ଆଗ୍ରାଭେଟ୍ କଲା ? କାରଣ କ'ଣ ହୋଇପାରେ ? ? ଜିତ୍ ଓ ଗୀତା ତ ଏକା ନଥିଲେ ? ପାଖରେ ତା'ର ସାନ ଶାଳୀ ଓ ଝିଅାରୀ ଥିଲେ । କ'ଣ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ପୁଣି ଯୁକ୍ତିତର୍କ ଲାଗିଲା କି ? ଏଥରକ କାହିଁକି ଶାଳୀ ଓ ଝିଅାରୀ ଯାଇ ଜଗି ରହିଲେ ? ଜିତ୍ କ'ଣ ଏକା ପଡ଼ିଗଲା ? ସେମାନେ ତିନିଜଣ ମିଶିକରି ତା ସହିତ କିଛି ଯୁକ୍ତି କଲେ ? ଏମିତି

ଅସଂଖ୍ୟ ପ୍ରଶ୍ନବାଚୀ ବାପାଙ୍କ ମନରେ ଉଙ୍କି ମାରିଲା; ତେବେ ସାଙ୍ଗେ ସାଙ୍ଗେ ବିଶେଷଜ୍ଞ ଡାକ୍ତରଙ୍କୁ ଫୋନ୍‌ରେ ଯୋଗାଯୋଗ କରି ଜିତ୍‌ଙ୍କ ଅବସ୍ଥା ଜଣାଇଲେ ଓ ପରାମର୍ଶ ମାଗିଲେ । ଡାକ୍ତର ବି ଜିତ୍‌ଙ୍କ ଅବସ୍ଥା ସମ୍ପର୍କରେ ଜାଣି କେଉଁ ଔଷଧ ବ୍ୟବହାର କରିବାକୁ ହେବ, ଜଣାଇଲେ । ବାପା, ସେ ଭଦ୍ରଲୋକଙ୍କୁ ଫୋନ୍ ମାଧ୍ୟମରେ ଡାକ୍ତରଙ୍କ ପରାମର୍ଶ ଜଣାଇଲେ । ସେଇ ପ୍ରକାରେ ଔଷଧ ଦିଆଗଲା । ସ୍ଥାନୀୟ ଡାକ୍ତରଙ୍କୁ ପୁଣିଥରେ ଗୀତା ଡକାଇ ପଠାଇଲେ । ସେ କହିଲେ, ବିଶେଷଜ୍ଞ ଡାକ୍ତରଙ୍କ ପ୍ରେସ୍‌କ୍ରିପ୍‌ସନ୍ ଉପରେ ସେ ଆଉ କିଛି ଔଷଧ ବ୍ୟବସ୍ଥା କରିପାରିବେ ନାହିଁ । ପ୍ରସେନ୍‌ଜିତ୍ ଗୋବିନ୍ଦପାଟଣାରେ । ବାପା ୫୦୦ କିଲୋମିଟର ଦୂର ଗାଁରେ । । ବିଶେଷଜ୍ଞ ଡାକ୍ତର କଟକରେ । ଫୋନ୍ ଉପରେ ରୋଗୀର ରୋଗ ସମ୍ପର୍କରେ ପରାମର୍ଶ ଚାଲିଲା । ପ୍ରସେନ୍‌ଜିତ୍ ଚାହୁଁଥିଲେ, ତୁରନ୍ତ ବାପା ବୋଉଙ୍କ ପାଖକୁ ଚାଲିଯିବାକୁ । ଗୀତା ଡିସେମ୍ବର ୯ ତାରିଖ ପର୍ଯ୍ୟନ୍ତ ଅପେକ୍ଷା କଲେ, ବେଶୀ ବଳାବଳ ହେବାରୁ ନଅ ତାରିଖ ସନ୍ଧ୍ୟା ଏକ୍ସପ୍ରେସ୍‌ରେ ସେହି ଭଦ୍ରଲୋକଙ୍କ ସାଙ୍ଗରେ ଜିତ୍‌ଙ୍କୁ ବାପା ବୋଉଙ୍କ ପାଖକୁ ପଠାଇଦେଲେ । ମୁନିଗୁଡ଼ା ଷ୍ଟେସନରୁ ଗାଡ଼ି ଛାଡ଼ିବା ବେଳେ ଫୋନ୍‌ରେ ଜଣାଇଦେଲେ ଯେ ଜିତ୍‌ଙ୍କୁ ଧରି ଭଦ୍ରଲୋକ ଯାଉଛନ୍ତି, ପରଦିନ ସକାଳ ୯ଟା ମଧ୍ୟରେ ପହଞ୍ଚିଯିବ ।

ବାପା ଫୋନ୍ ପାଇ ବିଶେଷଜ୍ଞ ଡାକ୍ତରଙ୍କ ପରାମର୍ଶ କ୍ରମେ ଆବଶ୍ୟକ ଔଷଧ କିଣି ଅପେକ୍ଷା କରି ରହିଲେ ଓ ଷ୍ଟେସନରେ ଟ୍ରେନ୍ ପହଞ୍ଚିବା ସମୟକୁ ଲୋକ ପଠାଇଲେ । ସେ ଭଦ୍ରଲୋକ ପ୍ରସେନ୍‌ଜିତ୍‌ଙ୍କୁ ଅଟୋରିକ୍ସାରେ ନେଇ ସାଢ଼େ ନଅଟାରେ ଘରେ ପହଞ୍ଚିଗଲେ । ଉପର ମହଲାକୁ ଉଠିବାରେ କଷ୍ଟ ଅନୁଭବ କରିବାରୁ ବଡ଼ଭାଇ ଅଭିଜିତ୍ ତାଙ୍କ ଦୁଇ ବାହୁକୁ ଧରି ଉପରକୁ ଆଣିଲେ । ବାପା ବୋଉଙ୍କୁ ଦେଖି ଜିତ୍ ଖୁବ୍ ପ୍ରସନ୍ନ ଦେଖାଗଲେ । ତାଙ୍କର ଅଧା ରୋଗ ଭଲ ହୋଇଗଲା ବୋଲି ସାଙ୍ଗରେ ଆସିଥିବା ଭଦ୍ରବ୍ୟକ୍ତି କହିଲେ । ବାପା ସାଙ୍ଗେ ସାଙ୍ଗେ ଔଷଧ ଦେଇ ରାତ୍ରି ଅନିଦ୍ରା ହେତୁ ଶୋଇ ପଡ଼ିବାକୁ କହିଲେ । ତା' ପୂର୍ବରୁ ପଚାରିଲେ - ଦରଖାସ୍ତ ଦେଇଛୁ କି ନାହିଁ ? ଜିତ୍ କହିଲେ - ନାହିଁ । ସାଙ୍ଗେ ସାଙ୍ଗେ ବାପା ସି.ଏଲ୍. ପାଇଁ ଦରଖାସ୍ତ ଲେଖିଦେଲେ ଓ ପ୍ରସସେନ୍‌ଜିତ୍ କେବଳ ଅଙ୍କାବଙ୍କା ଅକ୍ଷରରେ ଦସ୍ତଖତ କଲେ । ସେତେବେଳକୁ ହାତ ଥରିଲାଣି । ସେ ଭଦ୍ରଲୋକ ଛୁଟି ଦରଖାସ୍ତ ନେଇ ସଙ୍ଗେ ସଙ୍ଗେ ବାହାରିଗଲେ ଷ୍ଟେସନ୍‌କୁ, ଦକ୍ଷିଣପଟ କୌଣସି ଗାଡ଼ି ଧରି ଫେରିଯିବା ଉଦ୍ଦେଶ୍ୟରେ । ଜିତ୍‌ଙ୍କୁ ନିଦ ହେଲା ନାହିଁ ।

ଭଦ୍ରଲୋକ ଚା କପେ ଖାଇବାକୁ ଅପେକ୍ଷା କଲେ ନାହିଁ । କହିଲେ – ମୋର ବହୁତ ଜରୁରୀ କାମ ଥିଲା, କେବଳ ଜିତ୍‌କୁ ନେଇ ଆସିବାକୁ ବାଧ୍ୟ ହେଲି । ତା ଶାଳୀ ଶଶୀ ସାଙ୍ଗରେ ଆସିବାକୁ ଚାହୁଁଥିଲା । କିନ୍ତୁ ମୁଁ ମନା କଲି । ଆସିଥିଲେ, ତା ବଡ଼ଭଉଣୀ ଭେଣୋଇଙ୍କ ପାଖରେ ଛାଡ଼ିବାକୁ କହିଥାନ୍ତା । ପ୍ଲାଟଫର୍ମ ଉପରେ କିଏ ଦେଖା ପଡ଼ିଯାଇଥିଲେ, ଜିତ୍‌କୁ ତାଙ୍କ ସାଙ୍ଗରେ ଛାଡ଼ିଦେଇ ଷ୍ଟେସନ ଉପରୁ ମୁଁ ସାଉଥ୍‌କୁ ଯିବାପାଇଁ ଅପେକ୍ଷା କରିଥିବା ଟ୍ରେନ୍‌ରେ ଫେରି ଯାଇଥାନ୍ତି । ବହୁତ ଜରୁର କାମ ଅଛି, ମୁଁ ବି ଛୁଟି ନେଇ ଆସି ନାହିଁ ।

ବାପା ପଚାରିଲେ – ଗୀତା ? ଗୀତା କାହିଁକି ସାଙ୍ଗରେ ଆସିଲା ନାହିଁ ? ଭଦ୍ର ଲୋକ ଉତ୍ତର ଦେଲେ – କଲେଜରେ ପରୀକ୍ଷା ଚାଲିଛି । ସେ ଇନ୍‌ଭିଜିଲେସନ୍ କାମରେ ରହିବାକୁ ବାଧ୍ୟ ହେଲା । ତେଣୁ ସାଙ୍ଗରେ ଆସି ପାରିଲା ନାହିଁ । ବାପା କହିଲେ – ବାବୁ, ରାତି ଅନିଦ୍ରା ହୋଇ ଆସିଛ । ଟିକିଏ ଫ୍ରେସ୍ ହୋଇ ଟିଫିନ୍ କରିଯାଅ । 'ନାଇଁ ବାବା ମୁଁ ଫେରି ଯାଉଛି । ଷ୍ଟେସନ୍ ଯାଉଛି; ଯଦି ଟ୍ରେନ୍ ନପାଏ, ବସ୍ ଧରି ଆଜି ସନ୍ଧ୍ୟା ସୁଦ୍ଧା ମୋତେ ପାଟଣାରେ ପହଞ୍ଚିଯିବାକୁ ହେବ ।' ଭଦ୍ରଲୋକଙ୍କୁ ଷ୍ଟେସନରେ ଛାଡ଼ି ଦେବାକୁ ବାପା ତାଙ୍କର ଜଣେ ପୁତୁରାକୁ ମଟର ସାଇକେଲ୍‌ରେ ପଠାଇଲେ ।

ବାପା ଭାବୁଥିଲେ – ଜିତ୍‌ର ସାଙ୍ଗରେ ଗୀତା କାହିଁକି ଆସିଲା ନାହିଁ ? ତେବେ କ'ଣ ଜିତ୍ ଅସୁସ୍ଥତା ଏତେ ସିରିୟସ୍ ନୁହେଁ ? ଯାହା କିଛି ହେଲେ ବି ସ୍ତ୍ରୀ ହିସାବରେ ସ୍ୱାମୀର ଦେହ ଖରାପ ଥିବାରୁ ଗୀତା ଜିତ୍ ସହିତ ଆସିବା ଥିଲା ଅତି ଜରୁରୀ । ଭଦ୍ରଲୋକ କହିଗଲେ – 'ବାପା ବୋଉଙ୍କୁ ଦେଖିଲା ମାତ୍ରେ ଜିତ୍‌ଙ୍କର ଅଧେ ଅସୁସ୍ଥତା କମିଗଲା ।'

ଭଦ୍ରଲୋକ ତ ରହିଲେ ନାହିଁ । ଗୀତା ଆସିଥିଲେ, ସେ ବାପାବୋଉ ଓ ଡାକ୍ତରଙ୍କୁ କହିପାରିଥାନ୍ତା, କେଉଁ କାରଣରୁ ଗୋବିନ୍ଦପାଟଣା ବସାରେ ଜିତ୍‌ର କଣ୍ଡିସନ୍ ଆଗ୍ରାଭେଟ୍ କଲା ? ବାପା ତ ତାକୁ ଠିକ୍ ଥିବା ଦେଖି ଆସିଥିଲେ । ତାଙ୍କ ଆସିବାର ଦୁଇ ତିନିଦିନ ମଧ୍ୟରେ ତା ଅବସ୍ଥା କାହିଁକି ଏପରି ଖରାପ ହୋଇଗଲା ? ବାପାଙ୍କ ମନ ସଂଶୟର ଦୋଳାରେ ଦୋଳାୟିତ ହେବାକୁ ଲାଗିଲା । ତେବେ ଜିତ୍‌ଙ୍କର ଚିକିତ୍ସା ସହ ସେବା ଶୁଶ୍ରୁଷା କରିବାରେ ଲାଗି ପଡ଼ିଲେ । ବୋଉ ମଧ୍ୟ ।

ଜିତ୍ ଦାନ୍ତ ଘଷି କିଛି ଜଳଖିଆ କଲେ । ଡାକ୍ତର ବ୍ୟବସ୍ଥା କରିଥିବା ଔଷଧ ବି ଖାଇଲେ । ଟିଭି ଖୋଲି ନ୍ୟୁଜ୍ ଶୁଣିଲେ । ଘର ଭିତରେ ବୁଲା ବୁଲି କଲେ ।

ଆସିବା ଦିନ ସନ୍ଧ୍ୟା ପର୍ଯ୍ୟନ୍ତ ବେଶୀ କଥାବାର୍ତ୍ତା ନକଲେ ମଧ୍ୟ ସତେଜ୍ ଥିଲେ । ବୋଉ ଯାହା ଖାଇବାକୁ ଦେଉଥିଲେ, ଖାଉଥିଲେ । ଅବଶ୍ୟ ଗାଧୋଇଲେ ନାହିଁ । ମନରେ ଅସ୍ଥିରତା ଥିଲା । ଶରୀରରେ ଦୁର୍ବଳତା ବି ଥିଲା । ହାତ ବାଜି ଗଲା ଯେ, ଟେବୁଲ୍ ଉପରୁ କାଚ ଗ୍ଲାସ୍‌ଟାଏ ପଡ଼ି ଭାଙ୍ଗିଗଲା । ସେଥିପାଇଁ ଦୁଃଖିତ ହେଲେ । ଶବ୍ଦ ଶୁଣି ବୋଉ ଘର ଭିତରକୁ ଦୌଡ଼ି ଆସିବାରୁ କହିଲେ - ବୋଉ, ହାତବାଜି ଗ୍ଲାସଟା ଭାଙ୍ଗିଗଲା । ବୋଉ କହିଲେ - ହଉ, ଭାଙ୍ଗିଲା ତ ଭାଙ୍ଗିଲା, ତୁ ସାରା ରାତ୍ରି ଅନିଦ୍ରା ହୋଇ ଆସିଛୁ । ଖାଇଲୁ ତ ଟିକିଏ ଶୋଇପଡ଼ । ଜିତ୍‌ଙ୍କୁ ସ୍ୱାଭାବିକ୍ ନିଦ ଆସିଲା ନାହିଁ । କେବଳ ଖଟ ଉପରେ ଗଡ଼ପଡ଼ ହେଲେ । ବାରମ୍ବାର ଉଠି ଟି.ଭି. ଦେଖିବାକୁ ଚେଷ୍ଟା କଲେ । ଟି.ଭି.ର ଲକ୍ ଉପରେ ହାତ ପଡ଼ିଗଲା ଯେ, ଆଉ ଫିଟାଇ ପାରିଲେ ନାହିଁ । ଆସି ଖଟରେ ପଡ଼ି ରହି ଶୋଇବାକୁ ଚେଷ୍ଟା କଲେ ।

ସାଙ୍ଗରେ ଆସିଥିବା ଭଦ୍ରଲୋକଙ୍କ ପ୍ରତି ଜିତ୍‌ଙ୍କର ଅସ୍ୱାଭାବିକ ସନ୍ଦେହ ଓ ଘୃଣା । ଯେତେବେଳେ ଅପ୍‌ଷ୍ଟେୟାର୍‌ରେ ଭାଇଙ୍କ କାନ୍ଧରେ ଭରାଦେଇ ଉଠୁଥିଲେ, ଘର ଭିତରକୁ ଆସି କହିଲେ - କ'ଣ, ସେ ଦାମିକା ଜାମେଟ୍ ପିନ୍ଧିଛି ବୋଲି ତା' ସହିତ କଥା ହେବାକୁ ଡରି ଯାଉଛ ? ସେ ଜାକେଟ୍ ପରା ବିବାହରେ ଭଦ୍ରଲୋକ ହୋଇଥିବାରୁ ଗୀତାର ଭାଇ ପ୍ରେଜେଣ୍ଟେସନ୍ ଦେଇଛନ୍ତି । ସେ କ'ଣ ନିଜେ କିଣିଛି ? ବଡ଼ଭାଇ କିଛି କହିଲେ ନାହିଁ । କେବଳ କହିଲେ - ତୁ ଶୋଇ ପଡ଼ ।

ଘରେ ପହଞ୍ଚିବାର ଦ୍ୱିତୀୟ ଦିନ ଜିତ୍ ଫିଟ୍‌ସ୍ ହେଲାପରି ଗୁଡ଼ାଏ ଖୁବ୍ ଜୋର୍‌ରେ ଭିଡ଼ି ମୋଡ଼ି ହେଲେ । ବାପା ତାଙ୍କୁ ନିୟନ୍ତ୍ରଣ କରିନେଲେ । ଔଷଧ ଦିଆ ଯାଇଛି ତ, କାମ କରିବାକୁ ଘଣ୍ଟାଏ ସମୟ ଲାଗିବ । ସେତେବେଳକୁ ରୋଗର ଉପସର୍ଗ ନିୟନ୍ତ୍ରିତ ହୋଇଯିବ - ବାପା ଭାବିଲେ । ସାରା ଦିନଟା ନୀରବରେ ଜିତ୍ ବିଛଣାରେ ପଡ଼ି ରହିଲେ ।

ଚିତ୍ ହୋଇ ଶୋଇଥାନ୍ତି । ପେଟ ଉପରେ ପ୍ରାର୍ଥନା ମୁଦ୍ରାରେ ଯୋଡ଼ହସ୍ତ କରିଥାନ୍ତି । ସତେ କ'ଣ ଭଲ ହୋଇଯିବା ପାଇଁ ଭଗବାନଙ୍କୁ ନୀରବରେ ପ୍ରାର୍ଥନା କରୁଥିଲେ ? ନିଦ ବଟିକା ଦେଇ ନିଦ ନ ହେବାରୁ ଆଉ ଓଭର ଡୋଜ୍ ନଦେଇ ବାପା ନିଦ ଆସିବାକୁ ଜିତ୍‌ଙ୍କ ମୁଣ୍ଡବାଳ ଆଉଁସିଲେ । ବୋଉ ଗୋଡ଼, ପାଦ ଘଷିଦେଲେ । ଘଣ୍ଟାଏ ଦୁଇ ଘଣ୍ଟା ପରେ ଜିତ୍‌ଙ୍କୁ ନିଦ ଆସିଲା । ସେ ସାତ ଆଠଘଣ୍ଟା ଘୁଙ୍ଗୁଡ଼ିମାରି ଶୋଇଲେ । ନିଦ ଭାଙ୍ଗିବା ପରେ ଆଉ ରାତିରେ ନିଦ ଔଷଧ ଦେବାପରେ ମଧ୍ୟ ଜିତ୍‌ଙ୍କୁ ନିଦ ହେଲା ନାହିଁ ।

ବାପା ଚିନ୍ତିତ ହୋଇ ପଡ଼ିଲେ । ଜିତ୍‌ଙ୍କର ବ୍ଲଡ଼ପ୍ରେସର୍ ଦେଖିବା ପାଇଁ ଡାକ୍ତରଙ୍କୁ ଡାକି ପଠାଇଲେ । ଡାକ୍ତର ଆସି କ'ଣ କ'ଣ ଔଷଧ ଖାଉଛନ୍ତି, କଣ ଟ୍ରିଟ୍‌ମେଣ୍ଟ ଚାଲିଛି, ପଚାରିଲେ । ବିଶେଷଜ୍ଞ ଡାକ୍ତରଙ୍କ 'ପ୍ରେସ୍‌କ୍ରିପ୍‌ସନ୍' ଦେଖିଲେ । ବ୍ଲଡ଼ପ୍ରେସର ଦେଖିଲେ - ୯୦-୧୬୦ । ୩୪ ବର୍ଷର ଯୁବକ ପକ୍ଷେ ଏହି ହାଇ ବ୍ଲଡ଼ପ୍ରେସର୍ ବିପଜ୍ଜନକ ନହେଲେ ମଧ୍ୟ ଏହା ଏକ 'ଆକ୍ୟୁଟ୍ ସିଜୋଫ୍ରେନିକ୍ କେସ୍' ହେତୁ ହସ୍‌ପିଟାଲାଇଜେସନ୍ ଲୋଡ଼ା । ତୁରନ୍ତ ଡାକ୍ତରଖାନାକୁ ନେଇ ଯାଆନ୍ତୁ । ବାପା କହିଲେ - 'ସିଜୋଫ୍ରେନିକ୍ କେସ୍'ରେ କ'ଣ ହସ୍‌ପିଟାଲାଇଜେସନ୍ ଜରୁରୀ ? ଘରେ ଔଷଧଦେଇ କଣ୍ଟ୍ରୋଲ୍ କରି ହେବ ନି ? ଡାକ୍ତର କହିଲେ - ହଁ, ଏପରି ପେସେଣ୍ଟ କେତେବେଳେ କାନ୍ଦିବେ, କେତେବେଳେ ହସିବେ, କେତେବେଳେ 'କମ୍ପ୍ଲିଟ୍ ମମ୍' ହୋଇଯିବେ । ବର୍ତ୍ତମାନ 'ମମ୍' ଅବସ୍ଥା । ତେଣୁ ସାଇଲେଣ୍ଟ ରହିଛି ।

'ତାଙ୍କୁ ମମ୍ ଅବସ୍ଥାରୁ ଆକ୍ଟିଭ୍ ଅବସ୍ଥାକୁ ଆଣିବା ପାଇଁ ଜିତ୍‌ଙ୍କ ସହ ଡାକ୍ତର କଥାବାର୍ତ୍ତା କଲେ । ଧମକ୍ ଦେଇ କହିଲେ - ଯଦି, କଥାବାର୍ତ୍ତା କରିବ ନାହିଁ, ତେବେ ଗଳା ଦେଇ ପେଟ ଭିତରକୁ ଏକ ଲୁହା ରଡ଼ ଭର୍ତ୍ତିକରି କ'ଣ ଘଟିଛି, ପରୀକ୍ଷା କରିବି' । ଏଥିରେ ଜିତ୍ ସମ୍ଭବତଃ ଡରିଯାଇ କଥାବାର୍ତ୍ତା କଲେ । 'ରଡ଼ ଭର୍ତ୍ତି କରିବା ଆବଶ୍ୟକ ନାହିଁ' ବୋଲି କହିଲେ । ତା'ପରେ ଡାକ୍ତର ବିଦାୟ ନେଲେ । ଜିତ୍‌ଙ୍କୁ ସେଓ ଓ ମିଠା ସୁଜି ଉପମା ଖାଇବାକୁ ଦେଇ ରାତି ଔଷଧ ଦିଆଗଲା । ତଥାପି ନିଦ ଆସିଲା ନାହିଁ । ବାପା ବୋଉ କ୍ଲାନ୍ତ ହୋଇ ଶୋଇ ପଡ଼ିଲେ ତାଙ୍କ ବିଛଣା କଡ଼ରେ । ସତେ ଯେମିତି କୋଳପୋଛା ପୁଅକୁ କୋଳେଇ ଶୋଇଛନ୍ତି ।

ରାତି ତିନିଟା । ପ୍ରଥମେ ବୋଉଙ୍କର ନିଦ ଭାଙ୍ଗିଲା । ପଚାରିଲେ - ଆରେ ଶୋଇଥିଲୁ ଟି । 'ନାଇଁ ନିଦ ହୋଇନି, ଆଖି ପୋଡୁଛି' । ବାପା ଉଠି ପଡ଼ିଲେ । କିଛି ଫଳାହାର ଦେଇ ନାଇଟ୍ରସନ୍ ୧୦ ଏମ୍.ଜି. ଦୁଇଟି ଟାବ୍‌ଲେଟ୍ ଖାଇବାକୁ ଦେଲେ ନିଦ ହେବା ପାଇଁ । ତଥାପି ନିଦ ଆସିଲା ନାହିଁ । ସକାଳ ହେଲା । ବୋଉ ସବୁ ଦିନପରି ସ୍ନାନସାରି ଠାକୁର ଘରକୁ ଗଲେ ପୂଜା କରିବା ପାଇଁ । ବାପା ଜିତ୍‌ଙ୍କ ପାଖରେ ବସିଛନ୍ତି । ପଚାରିଲେ - ଡାକ୍ତର ମିଶ୍ରଙ୍କ ପାଖକୁ ନେଇ ଯିବି । ମୁଣ୍ଡ ଟୁଙ୍ଗାରି ଜିତ୍ ସମ୍ମତି ଜଣାଇଲେ ।

କାମ କରିବାକୁ କାମୁଡୁଣୀ ଆସିଲା । ଘର ଓଳାଇବା ପାଇଁ ଜିତ୍ ଶୋଇଥିବା ଘରକୁ ଆସିବାରୁ, ବାପା ଓ ବଡ଼ଭଉଣୀ ଜିତ୍‌ଙ୍କୁ ତଳୁ ଖଟରେ ଶୁଆଇ ଦେବାକୁ ଟେକି ନେଲେ । ବିବାହ ପରେ ଜିତ୍ ପୃଥୁଳ କାୟ ହୋଇ ଯାଇଥିବାରୁ, ତାଙ୍କୁ ଟେକି

କରିନେବା ବାପା ଓ ଭଉଣୀ ପକ୍ଷେ କଷ୍ଟକର ହେଲା । କୌଣସି ପ୍ରକାରେ ଟେକି ନେଇ ଖଟ ଉପରେ ବସାଇଲେ । ଜିତ୍ ଖଟ ଦାଢ଼ରେ ବସିଲେ । ଶୋଇବାକୁ ମନା କଲେ । ସେତେବେଳକୁ ଛେପ ପକାଇବାକୁ ଆରମ୍ଭ କଲେଣି । ଛେପ ସବୁ ପିନ୍ଧିଥିବା ସାର୍ଟରେ ପଡୁଛି । ବାପ ଗୋଟାଏ ରୁମାଲ୍‌ରେ ଛେପ ପୋଛି ବାହାରକୁ ଯାଇଛନ୍ତି ରୁମାଲକୁ ବାଥରୁମ୍‌ରେ ଧୋଇବା ପାଇଁ ।

ଜିତ୍‌ଙ୍କ ପାଖରେ ବଡ଼ ଭଉଣୀ ଅଛନ୍ତି । ଏଇ ସମୟରେ ଜିତ୍ ପରିସ୍ରା କରିଦେଲେ । ବଡ଼ ଭଉଣୀ ଗୋଟାଏ ଗାମୁଛାରେ ପରିସ୍ରା ପୋଛି ବାହାରକୁ ଗଲେ । ବାପା, ଭଉଣୀ ରୁମ୍ ବାହାରେ ଥିବା ଅବସ୍ଥାରେ ଧୁମ୍ କରି ପଡ଼ିବା ଶବ୍ଦ ହେଲା । ବାପା ଓ ଭଉଣୀ ଘର ଭିତରକୁ ଦୌଡ଼ି ଆସିଲେ । ଦେଖିଲେ – ଜିତ୍ ମୁହଁ ମାଡ଼ି ତଳେ ସିମେଣ୍ଟ ଚଟାଣ ଉପରେ ପଡ଼ିଛନ୍ତି । ବାପା ପାଖକୁ ଯାଇ ଦେଖିଲେ – ଜିତ୍‌ଙ୍କର ହୋସ୍ ଚାଲିଯାଇଛି । କିଛି ସମୟ ପରେ ହୋସ୍ ଆସିବାରୁ ବାପା ଓ ଅପା ଜିତ୍‌ଙ୍କୁ ଉଠାଇ ନେଇ ଚଟାଣରେ ମଶିଣା ଉପରେ ଶୁଆଇ ଦେଲେ । ବାପା ପାଖରେ ବସିଲେ । ଜିତ୍‌ଙ୍କ କପାଳରେ ଝାଳର ଉଦ୍‌ଗମ୍ ଦେଖି ବାପା ସନ୍ଦେହ ଓ ଆଶଙ୍କାରେ ଆତଙ୍କିତ ହୋଇ ପଡ଼ିଲେ । କପାଳରୁ ଝାଳ ନିଜ ପାପୁଲିରେ ପୋଛିବାକୁ ଲାଗିଲେ । ଯେତେ ପୋଛୁଥାନ୍ତି, ଆହୁରି ଅଧିକ ଝାଳ ବାହାରୁଥାଏ । ବାପାଙ୍କର ଆଶଙ୍କା ବଢ଼ିଗଲା, ସେ ବିଚଳିତ ହୋଇ ପଡ଼ିଲେ । ସେ ଭାବିଲେ – କପାଳରୁ ଝାଳ ବୋହିବା ଶୁଭ ଲକ୍ଷଣ ନୁହେଁ । ସମ୍ଭବତଃ ଜିତ୍‌ର ଅବସ୍ଥା ହୃଦ୍‌ଘାତ ଆଡ଼କୁ ଯାଉଛି । ସାଙ୍ଗେ ସାଙ୍ଗେ ଫୋନ୍ ପାଖକୁ ଯାଇ ଡାକ୍ତର ପୁତୁରାକୁ ଫୋନ୍ କରିବା ପାଇଁ ଫୋନ୍ ନମ୍ବର ଟ୍ୟାପ୍ କଲେ । ବିଚଳିତ ଅବସ୍ଥାରେ ସେ ଫୋନ୍ ନମ୍ବର ଟ୍ୟାପ୍ କରୁ କରୁ ଅନ୍ୟ ନମ୍ବରରେ ଆଙ୍ଗୁଠି ପଡ଼ିଗଲା । ଫୋନ୍ ଯାଇ ଲାଗିଲା ବ୍ରଜରାଜନଗରରେ । ଜିତ୍‌ଙ୍କ ବଡ଼ ଭେଣୋଇଙ୍କ ପାଖରେ । ଆରପଟେ ଫୋନ୍ ଉଠାଇବାରୁ ବାପା ପଚାରିଲେ – ଧୁନ... ।'' ଆଜ୍ଞା, ମୁଁ ପାରେଶ୍ୱର କହୁଛି ।' ବାପା ଜାଣିଲେ, ଜିତ୍‌ର ଅବସ୍ଥା ଦେଖି ତାଙ୍କ ମୁଣ୍ଡ ଠିକ୍ ନଥିବାରୁ ଧୁନ ଫୋନ୍ ବଦଳରେ ଫୋନ୍ ଲାଗିଲାଣି ବ୍ରଜରାଜନଗରରେ । ବାପା ସମୟ ନଷ୍ଟ ନକରି କହିଲେ – ସବୁ ଭଲ ତ ! ମୋ ପୁତୁରା ଧୁନ୍‌କୁ ଫୋନ୍ କରୁ କରୁ ଭୁଲ୍‌ରେ ତୁମ ଫୋନ୍ ନମ୍ବର ଟ୍ୟାପ୍ କରିଦେଲି । ଫୋନ୍ ରଖି ଦିଅ – କହି ଫୋନ୍ କାଟିଦେଲେ ଓ ଧୁନ୍‌ଙ୍କ ପାଖକୁ ଫୋନ୍ ଲଗାଇଲେ ।

ସେତେବେଳକୁ ଡାକ୍ତର ପୁତୁରା ଡାକ୍ତରଖାନାର ଆଉଟ୍ ଡୋର୍‌ରେ ବସିଛନ୍ତି । ଡକ୍ଟର ଶୁଭେନ୍ଦୁ ରାୟ ପୁତୁରାଙ୍କୁ କହିଲେ-ଧୁନ୍, ଜିତ୍ ଦେହ ସିରିୟସ୍, କପାଳରୁ ଝାଳ ବୋହୁଛି । ଗୋଟାଏ ଗାଡ଼ି ନେଇ ତୁ ଆସ; ତାକୁ ତୁରନ୍ତ ହସ୍‌ପିଟାଲାଇଜ୍ କରି

ଚିକିତ୍ସା ବ୍ୟବସ୍ଥା କର । ଡାକ୍ତର ପୁତୁରା – କକା, ଏତେ ରୋଗୀ 'କ୍ୟୁ'ରେ ଛିଡ଼ା ହୋଇଛନ୍ତି, ମୁଁ ଯିବି କିପରି ? ତେବେ ମୁଁ ସଂଗ୍ରାମ ଭାଇଙ୍କୁ ଫୋନ୍ କରୁଛି, ସେ ତାଙ୍କ କାର୍‌ରେ ଜିତ୍‌କୁ ଡାକ୍ତରଖାନାକୁ ନେଇ ଆସିବେ ।

ବାପା ଉଦ୍‌ଗ୍ରୀବ ହୋଇ ଗାଡ଼ିକୁ ଅପେକ୍ଷା କରିଛନ୍ତି । ବୋଉ ପୂଜା ଅଧାରୁ ଠାକୁର ଘରୁ ଉଠି ଆସି ଜିତ୍‌ଙ୍କୁ ଚଟାଣରେ ଶୋଇଥିବା ଦେଖି ପୁଣି ଠାକୁର ଘରକୁ ଫେରି ଗଲେ ଓ 'ହନୁମାନ ଚାଳିଶା' ପଢ଼ିବାକୁ ଲାଗିଲେ । 'ଚାଳିଶା' ପଢ଼ି ସାରି ଠାକୁରଙ୍କୁ ଭୋଗ ନିବେଦନ କଲେ । ଘଣ୍ଟି ବଜାଇ ଆରତି କଲେ ।

ଏଣେ ଜିତ୍ ତାଙ୍କ ଶରୀର ମଧ୍ୟରେ ଅସ୍ୱାଭାବିକ ଅଶ୍ୱସ୍ତି ଅନୁଭବ କଲେ; ବାପା ପାଖରେ ଠିଆ ହୋଇଛନ୍ତି; ବଡ଼ ଭଉଣୀ ବାଲ୍‌କୋନିକୁ ଯାଇ ଗାଡ଼ି ଆସିଲା କି ନାହିଁ ଇତସ୍ତତଃ ହୋଇ ସାମ୍ନା ରାସ୍ତାକୁ ଲକ୍ଷ୍ୟ କରୁଛନ୍ତି । ବୋଉ ଠାକୁର ଘରୁ ପୂଜା ସାରି ଫେରି ନାହାନ୍ତି । ସେଇ ସମୟରେ ଜିତ୍ ଅବସ୍ଥା କ'ଣ ହେଲା, ଦେଖିବାକୁ ଅପା ବାଲ୍‌କୋନିରୁ ଘର ଭିତରକୁ ପଶି ଆସୁଛନ୍ତି । ଜିତ୍ କହିବାକୁ ଆରମ୍ଭ କଲେ – ସାତ ଆଠ ମାସ ବହୁତ ଯନ୍ତ୍ରଣା ଭୋଗିଲି । ଦୁଇ ହାତରେ ଛାତିକୁ ଚାପିଧରି – ବହୁତ ଯନ୍ତ୍ରଣା...; (କ୍ଷୀଣ ସ୍ୱରରେ) 'ମରିଯିବି' । ତା'ପରେ ଗୋଡ଼ହାତ ଜାକି – ତିନୋଟି ହିକ୍କା... । ଊର୍ଦ୍ଧ୍ୱ ମୁହଁ ହୋଇ ଜିତ୍‌ଙ୍କ ଶରୀର ନିଶ୍ଚଳ ହୋଇଗଲା । ସତେ ଯେମିତି ତିନୋଟି ଦୀର୍ଘଶ୍ୱାସ ନେଇ ଆଖି ବୁଜି ଶାନ୍ତିରେ ଶୋଇ ପଡ଼ିଛନ୍ତି ।

ବାପା ଥପ୍‌କିନା ପାଖରେ ବସି ପଡ଼ି – 'ଜିତ୍, ଜିତ୍, ଜିତ୍' – ଉଚ୍ଚ ସ୍ୱରରେ ଡାକିଲେ । କାଳେ ସେନ୍ସଲେସ୍ ହୋଇ ଯାଇଥିବ, ସେନ୍ସ ଫେରିଲେ ଜବାବ ଦେବ । ଯେତେ ଡାକିଲେ ବି ଉତ୍ତର ନାହିଁ । ବାପା ଜିତ୍‌ଙ୍କ ଛାତିରେ ହାତ ପକାଇଲେ । ଅନୁଭବ କଲେ, ଛାତିରୁ ଉତାପ ଆସ୍ତେ ଆସ୍ତେ କମି କମି ଯାଉଛି... । ସମ୍ଭବତଃ ସବୁ ଶେଷ । ଜିତ୍ ଆରପାରିକୁ ଚାଲିଗଲା, ଆମକୁ ଅସହାୟ ଅବସ୍ଥାରେ ଏକଲା କରି ଛାଡ଼ି । ହାୟ ! କ'ଣ ହୋଇଗଲା ! ବୋଉଙ୍କୁ ଡାକିଲେ – ଆହେ, ଦୌଡ଼ି ଆସ । ଜିତ୍‌ର କ'ଣ ହୋଇଗଲା । ଜିତ୍ ଆଉ ନାହିଁ । ବୋଉ ପୂଜାଘରୁ ଦୌଡ଼ି ଆସିଲେ । ପୁଅ ଆଖିବୁଜି ଶୋଇ ରହିଛି । ଡାକିଲେ ଜବାବ୍ ନାହିଁ । ବାପା ବୋଉ ଜିତ୍‌ଙ୍କ ଦେହରେ ଲୋଟି ପଡ଼ିଲେ । ବୋଉ ପୁଅର ପାଦ ଧରି ମୁଣ୍ଡ କୋଡ଼ିଲେ । ମୋ 'ଧନର କ'ଣ ହେଲା ? କାହିଁ କଥା କହୁ ନାହିଁ । ଜିତ୍‌ରେ, ମୋ ଧନରେ, ମୋ ବାପାରେ – ଥରେ ବୋଉକୁ ଅନା, ମୋତେ କଥା କହରେ...., ମୋ ଧନ... !

ସୁନା ପଞ୍ଜୁରୀରୁ ହୀରା ଶାରୀଟି ଉଡ଼ିଯାଇଛି କେତେବେଳୁ ଝିଡ଼ିକି ଖୋଲି । ଆଉ ଅଛି ଯେ ବୋଉ ବାପାଙ୍କର ଛାତି ଫଟା କାତର କାନ୍ଦଣାରେ ଜବାବ ଦେବ ???

